॥ ଶ୍ରୀହରିଃ ॥

1221▲

# ଆଦର୍ଶ ଦେବୀଚରିତ୍ର

आदर्श देवियाँ ( ओड़िआ )



GITA PRESS, GORAKHPUR

ଜୟଦୟାଲ ଗୋୟନ୍ଦକା

1221

॥ ଶ୍ରୀହରିଃ ॥

# ଆଦର୍ଶ ଦେବୀଚରିତ୍ର

आदर्श देवियाँ ( ओड़िआ )

ତ୍ୱମେବ ମାତା ଚ ପିତା ତ୍ୱମେବ
ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ ।
ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ
ତ୍ୱମେବ ସର୍ବଂ ମମ ଦେବଦେବ ॥

ଲେଖକ: ଜୟଦୟାଲ ଗୋୟନ୍ଦକା
ଭାଷାନ୍ତର: ସ୍ୱାମୀ ତ୍ୟାଗସ୍ୱରୂପାନନ୍ଦ

*Books are also available at—*

1. Gita Press, Gorakhpur Ki Pustak-Dukan, Bharatiya Towers, Badam Badi, Cuttack © (0671) 2335481, Mob. 8847856627
2. Cuttack, Railway Station, Platform No.1
3. Bhubaneswar, Railway Station, Platform No.1
4. Howrah, Railway Station, Platform No.5&18 Both.
5. Gobind Bhavan, 151, Mahatma Gandhi Road, Kolkata © (033) 40605293, 22680251; 22686894

Eleventh Reprint 2020 1,000

Total 39,000

❖ **Price : ₹ 8**

**( Eight Rupees only )**

Printed & Published by :

**Gita Press, Gorakhpur—273005 (INDIA)**

(a unit of Gobind Bhavan-Karyalaya, Kolkata)

Phone: (0551) 2334721, 2331250, 2331251

web : **gitapress.org** e-mail : **booksales@gitapress.org**

**Visit gitapressbookshop.in for online purchase of Gitapress publications.**

॥ ଶ୍ରୀହରିଃ ॥

# ନିବେଦନ

ଭାରତୀୟ ସଂସ୍କୃତି ଓ ତାର ମହାନ୍ ଆଦର୍ଶ ଅବଶ୍ୟ ଅନୁକରଣୀୟ ଏବଂ ସର୍ବଦା କଲ୍ୟାଣକାରୀ ଅଟେ। କେବଳ ଆମର ମହାପୁରୁଷମାନେ ନୁହଁନ୍ତି, ଏହି ଦେଶର ମହାନ୍ ନାରୀମାନେ ମଧ୍ୟ ନିଜର ଉତ୍ତମୋତ୍ତମ ଗୁଣଦ୍ୱାରା ତଥା ଆଦର୍ଶ ଚରିତ୍ରର ଉଜ୍ଜ୍ୱଳ ପ୍ରଭାଦ୍ୱାରା ସଂସାରକୁ ଚମକାଇ ଦେଇଛନ୍ତି। ଏଣୁ ସେହି ପ୍ରାତଃସ୍ମରଣୀୟା ଦେବୀମାନଙ୍କର ମହାନ୍ ଚରିତ୍ର ବନ୍ଦନୀୟ ଏବଂ ନାରୀମାନଙ୍କ ପାଇଁ ପ୍ରକାଶ-ସ୍ତମ୍ଭ ବା ପ୍ରକୃତ ମାର୍ଗଦର୍ଶକ ଅଟେ।

ଏହି ପୁସ୍ତକରେ ଭାରତର ଏପରି ଚାରିଗୋଟି ମହାନ୍ ଦେବୀଙ୍କର ଆଦର୍ଶ ଚରିତ୍ର ବର୍ଣ୍ଣନା ଅଛି, ଯାହାକି ପରମ ଶ୍ରଦ୍ଧେୟ ବ୍ରହ୍ମଲୀନ ଶ୍ରୀଜୟଦୟାଲ ଗୋୟନ୍ଦକାଙ୍କ ଦ୍ୱାରା ଲେଖା ଯାଇଛି। ଏହି ମହାନ୍ ନାରୀ-ଚରିତ୍ର ଅନେକ ବର୍ଷ ଆଗରୁ ସମୟେ-ସମୟେ 'କଲ୍ୟାଣ'ରେ ପ୍ରକାଶିତ ହୋଇଛି। ତାହାପରେ ଏହି ପୁସ୍ତକର ମୁଖ୍ୟ ଚରିତ୍ର 'ସୀତାଙ୍କ ଚରିତ୍ରରୁ ଆଦର୍ଶ ଶିକ୍ଷା' ନାମରେ ଗୋଟିଏ ଛୋଟ ପୁସ୍ତକରେ ତଥା ଶେଷ ତିନୋଟି ଚରିତ୍ର (କୁନ୍ତୀ, ଦ୍ରୌପଦୀ ଓ ଗାନ୍ଧାରୀ)- 'ତିନି ଆଦର୍ଶ ଦେବୀ' ନାମରେ କିଛି ସମୟ ପୂର୍ବରୁ ଅନ୍ୟ ପୁସ୍ତକରୂପରେ ମଧ୍ୟ ପ୍ରକାଶିତ ହୋଇଛି। ଉପଯୋଗିତା ଓ ସୁବିଧା ଦୃଷ୍ଟିରୁ ସେହି ଚାରି ଚରିତ୍ରକୁ ଏକସ୍ଥାନରେ ସଂକଳିତ କରି ବର୍ତ୍ତମାନ ଏହାକୁ ପୁସ୍ତକାକାରରେ ପ୍ରକାଶିତ କରାଯାଇଛି। ଏହି ଚାରୋଟି ଆଦର୍ଶ ନାରୀ-ରତ୍ନଙ୍କ ଉତ୍କୃଷ୍ଟ ଚରିତ୍ର ନିଃସନ୍ଦେହରେ ବିଶେଷ ପ୍ରେରଣାଦାୟୀ ଏବଂ ପଠନୀୟ।

କେତେକ ପୁସ୍ତକ ସମସ୍ତଙ୍କ ପାଇଁ ଶିକ୍ଷାପ୍ରଦ, ଜ୍ଞାନବର୍ଦ୍ଧକ ଏବଂ ଉପଯୋଗୀ, କିନ୍ତୁ ମା-ଭଉଣୀ ଏବଂ ବାଳକ-ବାଳିକାମାନଙ୍କ ପାଇଁ ଏହା ବିଶେଷରୂପରେ ପରମୋପଯୋଗୀ ଅଟେ। ସେମାନଙ୍କୁ ସୁସଂସ୍କାର ଦେବା ପାଇଁ ଏହା ଉତ୍କୃଷ୍ଟ ମାର୍ଗଦର୍ଶନ ଅଟେ। ଏଣୁ ଏହି ଶିକ୍ଷାପ୍ରଦ ପ୍ରେରଣାଦାୟୀ ଚରିତ୍ରମାନଙ୍କରୁ ସମସ୍ତ ଶ୍ରଦ୍ଧାଳୁଲୋକ, ପ୍ରେମୀ ପାଠକ ଏବଂ ବିଶେଷତଃ ମହିଳାମାନେ ଅଧିକାଧିକ ରୂପରେ ଲାଭ ଉଠାଇବା ଉଚିତ।

—ପ୍ରକାଶକ

॥ ଶ୍ରୀହରିଃ ॥

# ବିଷୟ-ସୂଚୀ

ବିଷୟ | ପୃଷ୍ଠା ସଂଖ୍ୟା





॥ ଶ୍ରୀହରିଃ ॥

# ଆଦର୍ଶ ଦେବୀଚରିତ୍ର

## ଶ୍ରୀସୀତାଙ୍କ ଚରିତ୍ରରୁ ଆଦର୍ଶ ଶିକ୍ଷା

ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ ଯେ ଅଖିଳ ବିଶ୍ୱରେ ସ୍ତ୍ରୀ-ଚରିତ୍ରମାନଙ୍କ ମଧ୍ୟରେ ଶ୍ରୀରାମପ୍ରିୟା ଜଗଜ୍ଜନନୀ ଜାନକୀଙ୍କ ଚରିତ୍ର ସବୁଠାରୁ ଉତ୍କୃଷ୍ଟ ଅଟେ । ରାମାୟଣର ସମସ୍ତ ସ୍ତ୍ରୀ-ଚରିତ୍ରମାନଙ୍କ ମଧ୍ୟରେ ତ ସୀତାଙ୍କର ଚରିତ୍ର ସର୍ବୋତ୍ତମ, ସର୍ବଥା ଆଦର୍ଶ ଏବଂ ପଦେ ପଦେ ଅନୁକରଣ କରିବାଯୋଗ୍ୟ ହିଁ ଅଟେ । ଭାରତୀୟ ଲଳନାମାନଙ୍କ ପାଇଁ ସୀତାଙ୍କ ଚରିତ୍ର ସତ୍‌ମାର୍ଗରେ ଚଳିବା ପାଇଁ ପୂର୍ଣ୍ଣ ମାର୍ଗଦର୍ଶକ । ସୀତାଙ୍କର ଅସାଧାରଣ ପାତିବ୍ରତ୍ୟ, ତ୍ୟାଗ, ଶୀଳ, ଅଭୟ, ଶାନ୍ତି, କ୍ଷମା, ସହନଶୀଳତା, ଧର୍ମପରାୟଣତା, ନମ୍ରତା, ସେବା, ସଂଯମ, ସଦ୍‌ବ୍ୟବହାର, ସାହସ, ଶୌର୍ଯ୍ୟ ଆଦି ଗୁଣ ଏକସଙ୍ଗରେ ଜଗତ୍‌ର ବିରଳ ମହିଳାଙ୍କଠାରେ ମିଳି ପାରେ । ଶ୍ରୀସୀତାଙ୍କ ପବିତ୍ର ଜୀବନ ଏବଂ ଅପ୍ରତିମ ପାତିବ୍ରତ୍ୟଧର୍ମ ସଦୃଶ ଉଦାହରଣ ରାମାୟଣରେ ତଥା ଜଗତ୍‌ର କୌଣସି ବି ଇତିହାସରେ ମିଳିବା କଠିନ । ଆରମ୍ଭରୁ ନେଇ ଶେଷ ପର୍ଯ୍ୟନ୍ତ ସୀତାଙ୍କ ଜୀବନର ସବୁ କଥା କେବଳ ଗୋଟିଏ ପ୍ରସଙ୍ଗକୁ ଛାଡ଼ି ପବିତ୍ର ଓ ଆଦର୍ଶ । ଏପରି କୌଣସି କଥା ନାହିଁ, ଯଦ୍ଦ୍ୱାରା ଆମର ମା-ଭଉଣୀମାନଙ୍କୁ ସତ୍ ଶିକ୍ଷା ନ ମିଳିବ । ସଂସାରରେ ଏପର୍ଯ୍ୟନ୍ତ ଯେତେ ସ୍ତ୍ରୀ ଜନ୍ମଗ୍ରହଣ କରିଛନ୍ତି, ତନ୍ମଧ୍ୟରେ ଶ୍ରୀସୀତାଙ୍କୁ ପାତିବ୍ରତ୍ୟ ଧର୍ମରେ ସର୍ବଶିରୋମଣି କୁହାଯାଇପାରେ । କୌଣସି ବି ଉଚ୍ଚ-ରୁ-ଉଚ୍ଚ ସ୍ତ୍ରୀଙ୍କ ଚରିତ୍ରକୁ ସୂକ୍ଷ୍ମ ଆଲୋଚନା କଲେ ଏପରି କୌଣସି ନା କୌଣସି କଥା ମିଳି ପାରିବ ଯାହା ଅନୁକରଣ ଯୋଗ୍ୟ ନୁହେଁ, ପରନ୍ତୁ ସୀତାଙ୍କର ଏପରି କୌଣସି ବି ଆଚରଣ ମିଳେ ନାହିଁ ।

ସୀତାଙ୍କ ଜୀବନରେ ଯେଉଁ ଗୋଟିଏ ପ୍ରସଙ୍ଗ ଦୋଷଯୁକ୍ତ ବୋଲି ଜଣାଯାଏ, ତାହା ହେଲା–ମାୟାମୃଗ ଧରିବା ପାଇଁ ଶ୍ରୀରାମ ଚାଲି ଯାଇଥିବାବେଳେ ଏବଂ ମାରୀଚ ମରିବା ସମୟରେ 'ହା ସୀତେ! ହା ଲକ୍ଷ୍ମଣ!' ବୋଲି ଚିତ୍କାର କରିବା ସମୟରେ ସୀତାଦେବୀ ଅତ୍ୟନ୍ତ ଭୟଭୀତ ହୋଇ ଲକ୍ଷ୍ମଣଙ୍କ ପ୍ରତି ଏପରି କହିଥିଲେ ଯେ 'ମୁଁ ବୁଝୁଛି ଯେ ତୁମେ ମୋତେ ପାଇବା ପାଇଁ ନିଜ ବଡ଼ଭାଇଙ୍କର ମୃତ୍ୟୁ ଦେଖିବାକୁ ଚାହୁଁଛ। ମୋରି ଲୋଭରେ ତୁମେ ନିଜ ଭାଇକୁ ରକ୍ଷା କରିବାକୁ ଯାଉ ନାହଁ।' ଏହି କଥା ପାଇଁ ଭବିଷ୍ୟରେ ସୀତା ବହୁତ ଅନୁତାପ କରିଛନ୍ତି। ସାଧାରଣ ସ୍ତ୍ରୀ ଚରିତ୍ରରେ ସୀତାଙ୍କର ଏହି କଥାବାର୍ତ୍ତା କୌଣସି ବିଶେଷ ଦୋଷଯୁକ୍ତ ନୁହେଁ। ସ୍ୱାମୀଙ୍କୁ ସଙ୍କଟରେ ପଡ଼ିଥିବାର ବୁଝି ଆତୁରତା ଓ ପ୍ରେମର ବାହୁଲ୍ୟରେ ସୀତା ଏଠାରେ ନୀତିକୁ ଉଲ୍ଲଂଘନ କରିଥିଲେ। ଶ୍ରୀରାମ-ସୀତାଙ୍କ ଅବତାର ମର୍ଯ୍ୟାଦା ରକ୍ଷାପାଇଁ ଥିଲା, ଏହାଦ୍ୱାରା ସେ ନିଜର ଭୁଲ୍ ବୁଝିପାରିଥିଲେ। ସେଥିପାଇଁ ସୀତାଦେବୀ ପଶ୍ଚାତ୍ତାପ କରିଥିଲେ।

## ଜନକପୁରରେ ପ୍ରେମ ବ୍ୟବହାର

ଜନକପୁରରେ ପିତାଙ୍କ ଘରେ ସୀତାଦେବୀ ସମସ୍ତଙ୍କ ସଙ୍ଗରେ ବଡ଼ ପ୍ରେମରେ ବ୍ୟବହାର କରୁଥିଲେ। ଛୋଟ-ବଡ଼ ସମସ୍ତ ସ୍ତ୍ରୀ-ପୁରୁଷ ସୀତାଦେବୀଙ୍କୁ ହୃଦୟର ସହିତ ଚାହୁଁଥିଲେ। ସୀତା ଆରମ୍ଭରୁ ଲଜ୍ଜାଶୀଳ ଥିଲେ। ଲଜ୍ଜା ହିଁ ସ୍ତ୍ରୀମାନଙ୍କର ଭୂଷଣ। ସେ ପ୍ରତିଦିନ ପିତାମାତାଙ୍କ ଚରଣରେ ପ୍ରଣାମ କରୁଥିଲେ, ଘରର ଚାକରମାନେ ମଧ୍ୟ ତାଙ୍କ ବ୍ୟବହାରରେ ଅତି ପ୍ରସନ୍ନ ଥିଲେ। ଯେଉଁ ସମୟରେ ସେ ଶ୍ୱଶୁରାଳୟକୁ ଆସିବା ପାଇଁ ବିଦାୟ ନେଉଥିଲେ, ସୀତାଙ୍କର ପ୍ରେମ ବ୍ୟବହାରର କିଛି ଦିଗ୍‌ଦର୍ଶନ ଏହି ସମୟର ବର୍ଣ୍ଣନାରୁ ମିଳେ–

**ପୁନି ଧୀରଜୁ ଧରି କୁଅଁରି ହଁକାରୀଁ । ବାର ବାର ଭେଟହିଁ ମହତାରୀଁ ॥**
**ପହୁଁଚାଵହିଁ ଫିରି ମିଲହିଁ ବହୋରୀ । ବଢ଼ୀ ପରସ୍ପର ପ୍ରୀତି ନ ଥୋରୀ ॥**

**ପୁନି ପୁନି ମିଲନ ସଖିହ୍ନ ବିଲଗାଈ । ବାଲ ବଚ୍ଛା ଜିମି ଧେନୁ ଲୱାଈ ॥**

**ପ୍ରେମ ବିବସ ନର ନାରି ସବ ସଖିହ୍ନ ସହିତ ରନିୱାସୁ ।**
**ମାନହୁଁ କୀହ୍ନ ବିଦେହପୁର କରୁନାଁ ବିରହଁ ନିୱାସୁ ॥**

**ସୁକ ସାରିକା ଜାନକୀ ଜ୍ୟାଏ । କନକ ପିଂଜରହ୍ନି ରାଖି ପଢ଼ାଏ ॥**
**ବ୍ୟାକୁଲ କହହିଁ କହାଁ ବୈଦେହୀ । ସୁନି ଧୀରଜୁ ପରିହରଇ ନ କେହୀ ॥**
**ଭଏ ବିକଲ ଖଗ ମୃଗ ଏହି ଭାଁତୀ । ମନୁଜ ଦସା କୈସେଁ କହି ଜାତୀ ॥**
**ବଂଧୁ ସମେତ ଜନକୁ ତବ ଆଏ । ପ୍ରେମ ଉମଗି ଲୋଚନ ଜଲ ଛାଏ ॥**
**ସୀୟ ବିଲୋକି ଧୀରତା ଭାଗୀ । ରହେ କହାୱତ ପରମ ବିରାଗୀ ॥**
**ଲୀହ୍ନି ରାୟଁ ଉର ଲାଇ ଜାନକୀ । ମିଟୀ ମହାମରଜାଦ ଗ୍ୟାନ କୀ ॥**

ଯେଉଁଠାରେ ଜ୍ଞାନୀମାନଙ୍କର ଆଚାର୍ଯ୍ୟ ଜନକଙ୍କ ଜ୍ଞାନର ମର୍ଯ୍ୟାଦା ଶୂନ୍ୟ ହୋଇଯାଉଛି ଏବଂ ପିଞ୍ଜରାରେ ଥିବା ପକ୍ଷୀମାନେ ତଥା ପଶୁପକ୍ଷୀ ମଧ୍ୟ 'ସୀତା! ସୀତା!!' ଡାକି ବ୍ୟାକୁଳ ହୋଇ ଉଠୁଛନ୍ତି, ସେଠାରେ କେତେ ଯେ ପ୍ରେମ, ଏହି କଥାର ଅନୁମାନ କେବଳ ପାଠକ କରି ପାରିବେ! ସୀତାଙ୍କର ଏହି ଚରିତ୍ରରୁ ସ୍ତ୍ରୀଲୋକମାନେ ଏହି ଶିକ୍ଷା ଗ୍ରହଣ କରିବା ଉଚିତ ଯେ ସ୍ତ୍ରୀ ବାପଘରେ ଥିବାବେଳେ ଛୋଟ-ବଡ଼ ସମସ୍ତଙ୍କ ସହିତ ସମସ୍ତଙ୍କ ପ୍ରିୟ ହେବାଭଳି ବ୍ୟବହାର କରିବା ଉଚିତ ।

## ପିତାମାତାଙ୍କ ଆଜ୍ଞାପାଳନ

ସୀତା ନିଜର ପିତାମାତାଙ୍କ ଆଜ୍ଞାପାଳନ କରିବାରେ କେବେ ତ୍ରୁଟି କରୁ ନ ଥିଲେ । ପିତାମାତାଙ୍କଠାରୁ ତାଙ୍କୁ ଯାହାକିଛି ଶିକ୍ଷା ମିଳୁଥିଲା, ତାହା ସେ ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ । ମିଥିଳାରୁ ବିଦା ହେବା ସମୟରେ ଏବଂ ଚିତ୍ରକୂଟରେ ପିତାମାତାଙ୍କଠାରୁ ଯାହା କିଛି ଶିକ୍ଷା ମିଳିଥିଲା, ତାହା ସ୍ତ୍ରୀମାନଙ୍କ ପାଳନୀୟ ଅଟେ ।

**ହୋଏହୁ ସଂତତ ପିୟହି ପିଆରୀ । ଚିରୁ ଅହିବାତ ଅସୀସ ହମାରୀ ॥**
**ସାସୁ ସସୁର ଗୁର ସେୱା କରେହୂ । ପତି ରୁଖ ଲଖି ଆୟସୁ ଅନୁସରେହୂ ॥**

## ପତିସେବା ନିମିତ୍ତ ପ୍ରେମାଗ୍ରହ

ଶ୍ରୀରାମଙ୍କୁ ରାଜ୍ୟାଭିଷେକ ବଦଳରେ ହଠାତ୍ ବନବାସ ହୋଇଗଲା। ସୀତାଦେବୀ ଏହି ସମାଗ୍ଚର ଶୁଣିବା ମାତ୍ରେ ଶୀଘ୍ର ନିଜର କର୍ତ୍ତବ୍ୟ ସ୍ଥିର କରିଥିଲେ। ପିତ୍ରାଳୟ-ଶ୍ୱଶୁରାଳୟ, ଗହଣା-କପଡ଼ା, ରାଜ୍ୟ-ପରିବାର, ଘରବାଡ଼ି-ବଗିଗ୍ଚ, ଦାସ-ଦାସୀ ଓ ଭୋଗ-ରାଗ ଆଦିରେ କିଛି ଆବଶ୍ୟକ ନାହିଁ। ଛାୟାପରି ପତିଙ୍କ ସଙ୍ଗରେ ରହିବା ହିଁ ପତ୍ନୀର ଏକମାତ୍ର କର୍ତ୍ତବ୍ୟ। ଏହି ନିଶ୍ଚୟରେ ଆସି ସୀତାଦେବୀ ଶ୍ରୀରାମଙ୍କ ସହିତ ବନଗମନ ପାଇଁ ଯେପରି ବ୍ୟବହାର କରିଥିଲେ, ତାହା ପରମ ଉଜ୍ଜ୍ୱଳ ଓ ଅନୁକରଣୀୟ। ଶ୍ରୀସୀତାଦେବୀ ପ୍ରେମପୂର୍ଣ୍ଣ ବିନୟ ଓ ଜିଦ୍‌ରେ ବନଗମନ ନିମିତ୍ତ ବିନୀତଭାବରେ ଅଳି କରିଥିଲେ। ସାମ, ଦାମ, ନୀତି—ସମସ୍ତ ବୈଧ ଉପାୟ ଅବଲମ୍ବନ କରିଥିଲେ ଏବଂ ଶେଷରେ ସେ ନିଜ ପ୍ରଯତ୍ନରେ ସଫଳ ହୋଇଥିଲେ। କୌଣସି ଉପାୟରେ ବନରେ ପତିଙ୍କ ସହିତ ରହି ପତିଙ୍କ ସେବା କରିବା ହିଁ ତାଙ୍କର ଧ୍ୟେୟ ଥିଲା। ତାହାକୁ ସେ ପରମ ଧର୍ମ ବୋଲି ବୁଝିଥିଲେ। ଏହାଦ୍ୱାରା ତାଙ୍କୁ ପରମ ଆନନ୍ଦ ପ୍ରାପ୍ତି ହେଉଥିଲା। ସେ କହିଛନ୍ତି—

**ମାତୁ ପିତା ଭଗିନୀ ପ୍ରିୟ ଭାଈ । ପ୍ରିୟ ପରିୱାରୁ ସୁହୃଦ ସମୁଦାଈ ॥**
**ସାସୁ ସସୁର ଗୁର ସଜନ ସହାଈ । ସୁତ ସୁଂଦର ସୁସୀଲ ସୁଖଦାଈ ॥**
**ଜହଁ ଲାଗି ନାତ ନେହ ଅରୁ ନାତେ । ପିୟ ବିନୁ ତିୟହି ତରନିହୁ ତେ ତାତେ ॥**
**ତନୁ ଧନୁ ଧାମୁ ଧରନି ପୁର ରାଜୂ । ପତି ବିହୀନ ସବୁ ସୋକ ସମାଜୂ ॥**
**ଭୋଗ ରୋଗସମ ଭୂଷନ ଭାରୂ । ଜମ ଜାତନା ସରିସ ସଂସାରୂ ॥**

ବଣରେ ନାନା ପ୍ରକାର କ୍ଳେଶ ଏବଂ କୁଟୁମ୍ବ ସହିତ ରହିଲେ ନାନା ପ୍ରଲୋଭନ କଥା ଶୁଣି ମଧ୍ୟ ସୀତାଦେବୀ ନିଜ ପ୍ରତିଜ୍ଞା ପ୍ରତି ଅଟଳ ରହିଥିଲେ। ସେ ପତିସେବା ନିକଟରେ ସବୁ କିଛି ତୁଚ୍ଛ ପରି ମନେ କରୁଥିଲେ।

**ନାଥ ସକଲ ସୁଖ ସାଥ ତୁହ୍ମାରେଁ । ସରଦ ବିମଲ ବିଧୁ ବଦନୁ ନିହାରେଁ ॥**

ଏଠାରେ ସିଦ୍ଧ ହୁଏ ଯେ ସୀତାଦେବୀ ଥରେ ପ୍ରାପ୍ତ ହୋଇଥିବା ପତି-ଆଜ୍ଞାକୁ ବତାଇ ଦେଇ ପୁଣି ଥରେ ନିଜ ମନୋନୁକୂଳ ଆଜ୍ଞା ପ୍ରାପ୍ତ କରିବା ପାଇଁ ପ୍ରେମାଗ୍ରହ କଲେ। ଏପରିକି ଯେତେବେଳେ ଶ୍ରୀରାମ କୌଣସି ପ୍ରକାର ମାନି ନ ଥିଲେ ସେହି ସମୟରେ ହୃଦୟ ବିଦୀର୍ଣ୍ଣ ତଥା ଜୀବନ ବିୟୋଗ ପାଇଁ ସଙ୍କେତ ଦେଲେ–

**ଐସେଉ ବଚନ କଠୋର ସୁନି ଜୌଁ ନ ହୃଦଉ ବିଲଗାନ।**
**ତୌ ପ୍ରଭୁ ବିଷମ ବିୟୋଗ ଦୁଖ ସହିହହିଁ ପାଁଵର ପ୍ରାନ॥**

ଅଧ୍ୟାତ୍ମରାମାୟଣ ଅନୁସାରେ ତ ସୀତାଦେବୀ ଏପରି ସ୍ୱଷ୍ଟଭାବେ କହିଦେଲେ ଯେ–

**ରାମାୟଣାନି ବହୁଶଃ ଶ୍ରୁତାନି ବହୁଭିର୍ଦ୍ୱିଜୈଃ॥**
**ସୀତାଂ ବିନା ବନଂ ରାମୋ ଗତଃ କିଂ କୁତ୍ରଚିଦ୍ ବଦ।**
**ଅତସ୍ତ୍ୱୟା ଗମିଷ୍ୟାମି ସର୍ବଥା ତ୍ୱସହାୟିନୀ॥**
**ଯଦି ଗଚ୍ଛସି ମାଂ ତ୍ୟକ୍ତ୍ୱା ପ୍ରାଣାଂସ୍ତ୍ୟକ୍ଷ୍ୟାମି ତେଽଗ୍ରତଃ।**

(ଅ. ରା. ୨।୪।୭୭-୭୯)

'ମୁଁ ମଧ୍ୟ ବ୍ରାହ୍ମଣଙ୍କଠାରୁ ରାମାୟଣର ଅନେକ କଥା ଶୁଣିଛି। କେଉଁଠାରେ କ'ଣ ଏପରି କୁହାଯାଇଛି ଯେ କୌଣସି ବି ରାମାବତାରରେ ଶ୍ରୀରାମ ସୀତାଙ୍କୁ ଛାଡ଼ି ବଣକୁ ଯାଇଛନ୍ତି। ଏଥର ଏହି ନୂଆ କଥା କାହିଁକି ହେଉଛି? ମୁଁ ଆପଣଙ୍କର ସେବିକା ହୋଇ ସଙ୍ଗରେ ଯିବି। ଯଦି କୌଣସି ପ୍ରକାରେ ଆପଣ ମୋତେ ନ ନେବେ ତେବେ ମୁଁ ଆପଣଙ୍କ ଆଗରେ ପ୍ରାଣତ୍ୟାଗ କରିଦେବି।' ପତିସେବା କାମନାରେ ସୀତାଦେବୀ ଏହି ପ୍ରକାର ସ୍ୱଷ୍ଟରୂପେ ଅବତାର ବିଷୟକ ନିଜର ସମ୍ମାନଜନକ ଶବ୍ଦ ମଧ୍ୟ କହିଦେଲେ।

ବାଲ୍ମୀକିରାମାୟଣ ଅନୁସାରେ ସୀତାଦେବୀ ଅନେକ କାନ୍ଦିଲେ, ବିଶେଷ ଅଳି କଲେ, ବିବିଧ ପ୍ରାର୍ଥନା କଲେ ଏବଂ ପ୍ରାଣତ୍ୟାଗପୂର୍ବକ ପରଲୋକରେ ପୁନଃ ମିଳନ ହେବା ପ୍ରତିଜ୍ଞା କରିବାପରେ ଯେତେବେଳେ ଶ୍ରୀରାମ ତାଙ୍କୁ ସଙ୍ଗରେ ନେବା ପାଇଁ ରାଜି ହେଲେ ନାହିଁ ସେତେବେଳେ

ତାଙ୍କୁ ବଡ଼ ଦୁଃଖ ଲାଗିଲା ଏବଂ ସେ ପ୍ରେମକୋପରେ ଆଖିରୁ ଗରମ-ଗରମ ଲୁହଧାରା ବୁହାଇ ନୀତି ଅନୁସାରେ ଏହି ପ୍ରକାର କଠୋର କଥା କହିଲେ–'ହେ ଦେବ! ଆପଣଙ୍କ ପରି ଆର୍ଯ୍ୟପୁରୁଷ ମୋ ପରି ଅନୁରକ୍ତ, ଭକ୍ତ, ଦୀନ ଓ ସୁଖ-ଦୁଃଖକୁ ସମାନ ବୁଝୁଥିବା ସହଧର୍ମିଣୀକୁ ଏକୁଟିଆ ଛାଡ଼ି ଯିବାକୁ ଯେଉଁ ବିଗ୍ଚର କରୁଛନ୍ତି ଏହା ଆପଣଙ୍କ ପକ୍ଷରେ ଶୋଭା ପାଉ ନାହିଁ। ମୋର ପିତା ଆପଣଙ୍କୁ ପରାକ୍ରମୀ ଏବଂ ମୋତେ ରକ୍ଷା କରିବା ପାଇଁ ସମର୍ଥ ବୁଝି ନିଜର ଜାମାତା କରିଥିଲେ।' ଏହି କଥାରୁ ଏହା ମଧ୍ୟ ସିଦ୍ଧ ହୁଏ ଯେ ଶ୍ରୀରାମ ପିଲାଦିନରୁ ଅତ୍ୟନ୍ତ ଶ୍ରେଷ୍ଠ ପରାକ୍ରମୀ ରୂପେ ଗଣ୍ୟ ଥିଲେ। ଏହି ପ୍ରସଙ୍ଗରେ ଶ୍ରୀବାଲ୍ମୀକି ଓ ଗୋସ୍ୱାମୀ ତୁଳସୀଦାସ ସୀତା-ରାମ ସମ୍ବାଦରେ ଯାହା କିଛି କହିଛନ୍ତି ତାହା ପ୍ରତ୍ୟେକ ସ୍ତ୍ରୀ-ପୁରୁଷଙ୍କ ପକ୍ଷେ ଧ୍ୟାନପୂର୍ବକ ପଠନ ଓ ମନନଯୋଗ୍ୟ ଅଟେ।

ସୀତାଦେବୀଙ୍କ ପ୍ରେମର ବିଜୟ ହେଲା, ଶ୍ରୀରାମ ତାଙ୍କୁ ସଙ୍ଗରେ ନେବା ପାଇଁ ସ୍ୱୀକାର କଲେ। ଏହି କଥାରୁ ଏହା ସିଦ୍ଧ ହେଲା ଯେ ପତ୍ନୀକୁ ପତିସେବା ପାଇଁ–ନିଜ ସୁଖ ପାଇଁ ନୁହେଁ–ପତିଙ୍କ ଆଜ୍ଞାକୁ ବଦଳାଇବାର ଅଧିକାର ଅଛି। ସେ ପ୍ରେମରେ ପତିସୁଖ ପାଇଁ ଏପରି କରି ପାରନ୍ତି। ସୀତାଦେବୀ ଏପରି ମଧ୍ୟ କହିଥିଲେ 'ଯଦି ଆପଣ ଆଜ୍ଞା ନ ଦେବେ ତେବେ ମଧ୍ୟ ମୁଁ ସଙ୍ଗରେ ଯିବି।' ସୀତାଦେବୀଙ୍କର ଏହି ପ୍ରେମାଗ୍ରହକୁ ଆଜିପର୍ଯ୍ୟନ୍ତ କେହି ନିନ୍ଦା କରି ନାହାନ୍ତି, କାରଣ ସୀତାଦେବୀ କେବଳ ପତିପ୍ରେମ ଓ ପତିସେବା ପାଇଁ ସମସ୍ତ ସୁଖକୁ ଜଳାଞ୍ଜଳି ଦେଇ ବଣକୁ ଯିବାକୁ ପ୍ରସ୍ତୁତ ହୋଇଥିଲେ, କୌଣସି ଇନ୍ଦ୍ରିୟସୁଖରୂପକ ସ୍ୱାର୍ଥ ସାଧନ ପାଇଁ ନୁହେଁ। ଏଥିରୁ ଏହା ବୁଝିବା ଉଚିତ ନୁହେଁ ଯେ ସୀତାଦେବୀଙ୍କ ବ୍ୟବହାର ଅନୁଚିତ ବା ପତିବ୍ରତ ଧର୍ମର ବିରୁଦ୍ଧ ଥିଲା। ସ୍ତ୍ରୀର ଧର୍ମ ପାଇଁ ଏପରି ବ୍ୟବହାର କରିବାର ଅଧିକାର ଅଛି। ଏଥିରୁ ପୁରୁଷମାନଙ୍କୁ ଏହି ଶିକ୍ଷା ଗ୍ରହଣ କରିବା ଉଚିତ ଯେ ସହଧର୍ମିଣୀ ପତିବ୍ରତା ପତ୍ନୀର ବିନା ଇଚ୍ଛାରେ ତାହାକୁ ତ୍ୟାଗ କରି ଅନ୍ୟତ୍ର ଗ୍ଲଲିଯିବା ଅନୁଚିତ। ଠିକ୍ ଏହି ପ୍ରକାରେ ସ୍ତ୍ରୀ ମଧ୍ୟ ପତିସେବା ଓ ପତିସୁଖ ପାଇଁ ତାଙ୍କ ସହିତ ରହିବା

ଉଚିତ । ପତି ବିରୋଧ କଲେ ମଧ୍ୟ କଷ୍ଟ ଓ ଆପତ୍ତି ସମୟରେ ପତିସେବା ପାଇଁ ସ୍ତ୍ରୀର ତାଙ୍କ ସହିତ ରହିବା ଉଚିତ । ଅବଶ୍ୟ ଅବସ୍ଥା ଦେଖି କାର୍ଯ୍ୟ କରିବା ବିଧେୟ । ସବୁ ପରିସ୍ଥିତିରେ ସମସ୍ତଙ୍କ ପାଇଁ ଏକ ପ୍ରକାର ବ୍ୟବସ୍ଥା ହୋଇ ପାରିବ ନାହିଁ । ସୀତା ମଧ୍ୟ ନିଜର ସାଧୁତା ହେତୁ ସବୁ ସମୟରେ ଏହି ଅଧିକାରର ଉପଯୋଗ କରି ନ ଥିଲେ ।

## ପତିସେବାରେ ସୁଖ

ବଣକୁ ଯାଇ ସୀତାଦେବୀ ପତିସେବାରେ ସବୁ କିଛି ଭୁଲି ବହୁ ପ୍ରକାରେ ସୁଖୀ ଥିଲେ । ତାଙ୍କୁ ରାଜ-ଭୋଗ, କୋଠାବାଡ଼ି-ଉଦ୍ୟାନ, ଧନ-ଦୌଲତ ଓ ଦାସ-ଦାସୀଙ୍କ କଥା କିଛି ବି ମନେ ପଡୁ ନଥିଲା । ରାମଙ୍କୁ ବଣରେ ଛାଡ଼ି ଫେରି ଆସିଥିବା ସୁମନ୍ତ୍ର ସୀତାଙ୍କ ପାଇଁ ବିଳାପ କରି ମାତା କୌଶଲ୍ୟାଙ୍କୁ କହୁଛନ୍ତି— 'ସୀତା ନିର୍ଜନ ବଣରେ ଘର ପରି ନିର୍ଭୟରେ ରହିଛନ୍ତି । ସେ ଶ୍ରୀରାମଙ୍କ ଠାରେ ମନ ଲଗାଇ ତାଙ୍କଠାରୁ ପ୍ରେମ ପ୍ରାପ୍ତ କରୁଛନ୍ତି । ବନବାସ ବେଳେ ସୀତାଙ୍କୁ କିଛି ମଧ୍ୟ ଦୁଃଖ ହୋଇ ନାହିଁ । ମୋତେ ଏପରି ପ୍ରତୀତ ହେଉଛି ଯେ (ଶ୍ରୀରାମଙ୍କ ସହିତ) ସୀତା ବନବାସ ପାଇଁ ସର୍ବଥା ଯୋଗ୍ୟ । ଚନ୍ଦ୍ରମୁଖୀ ସୀତା ଯେପରି ପ୍ରଥମେ ଏହି ବଗିଚାକୁ ଯାଇ ଖେଳୁଥିଲେ, ସେପରି ମଧ୍ୟ ସେଠାକାର ନିର୍ଜନ ବନରେ ସେ ଶ୍ରୀରାମଙ୍କ ସହିତ ବାଳିକାଙ୍କ ପରି ଖେଳୁଛନ୍ତି । ସୀତାଙ୍କ ମନ ରାମଙ୍କ ଠାରେ; ତାଙ୍କର ଜୀବନ ଶ୍ରୀରାମଙ୍କ ଅଧୀନ, ଅତଏବ ଶ୍ରୀରାମଙ୍କ ସହିତ ସୀତାଙ୍କ ପାଇଁ ବନ ମଧ୍ୟ ଅଯୋଧ୍ୟା ଏବଂ ଶ୍ରୀରାମଙ୍କ ବିନା ଅଯୋଧ୍ୟା ହିଁ ବନ ।' ଧନ୍ୟ ପାତିବ୍ରତ୍ୟ! ଧନ୍ୟ!

## ଶାଶୁ-ସେବା

ସୀତା ପତିସେବା ପାଇଁ ବଣକୁ ଯାଇଥିଲେ; ପରନ୍ତୁ ତାଙ୍କୁ ଏହି କଥାର ବଡ଼ କ୍ଷୋଭ ରହିଗଲା ଯେ ଶାଶୁମାନଙ୍କ ସେବାରୁ ତାଙ୍କୁ ଅଲଗା

ହେବାକୁ ପଡୁଛି । ସୀତା ଶାଶୁଙ୍କର ପାଦ ଛୁଇଁ ଅନାବିଳ ମନରେ କାନ୍ଦି କାନ୍ଦି କହୁଛନ୍ତି–

**× × × × × । ସୁନିଅ ମାୟ୍ ମୈଁ ପରମ ଅଭାଗୀ ॥**
**ସେୱା ସମୟ୍ ଦୈଅଁ ବନୁ ଦୀହ୍ନା । ମୋର ମନୋରଥୁ ସଫଲ ନ କୀହ୍ନା ॥**
**ତଜବ ଛୋଭୁ ଜନି ଛାଡ଼ିଅ ଛୋହୂ । କରମୁ କଠିନ କଛୁ ଦୋସୁ ନ ମୋହୂ ॥**

ଶାଶୁବୋହୂଙ୍କର ଏହି ବ୍ୟବହାର ଆଦର୍ଶ । ଭାରତୀୟ ସ୍ତ୍ରୀଲୋକମାନେ ଯଦି ଆଜି କୌସଲ୍ୟା ଓ ସୀତାଙ୍କ ପରି ବ୍ୟବହାର କରିବା ଶିଖନ୍ତେ ତେବେ ଭାରତୀୟ ଗୃହସ୍ଥ ସବୁ ପ୍ରକାରେ ସୁଖୀ ହୋଇଯାଆନ୍ତେ । ଶାଶୁ ନିଜର ବୋହୂମାନଙ୍କୁ ସୁଖ ଦେବା ପାଇଁ ଛଟପଟ ହେବେ ଏବଂ ଶାଶୁମାନଙ୍କ ସେବା ନିମନ୍ତେ ବୋହୂମାନେ ବ୍ୟାକୁଳିତ ହେବେ ତ ଦୁଇଆଡୁ ହିଁ ସୁଖର ସାମ୍ରାଜ୍ୟ ସ୍ଥାପିତ ହୋଇ ପାରିବ ।

## ସହିଷ୍ଣୁତା

ସୀତାଙ୍କର ସହିଷ୍ଣୁତାର ଗୋଟିଏ ଉଦାହରଣ ଦେଖନ୍ତୁ । ବନଗମନ ସମୟରେ କୈକେୟୀ ସୀତାଙ୍କୁ ବନବାସଯୋଗ୍ୟ ବସ୍ତ୍ର ପିନ୍ଧିବା ପାଇଁ କହୁଥିବା ବେଳେ ବସିଷ୍ଠଙ୍କ ପରି ମହର୍ଷିଙ୍କ ମନ ମଧ୍ୟ କ୍ଷୁବ୍ଧ ହୋଇ ଉଠିଥିଲା, ପରନ୍ତୁ ସୀତା ଏହି କଥାକୁ କେବଳ ଚୁପ୍‌ଚାପ ଶୁଣୁ ନ ଥିଲେ, ଆଜ୍ଞାନୁସାରେ ସେ ବସ୍ତ୍ର ଧାରଣ ମଧ୍ୟ କରିଥିଲେ । ଏଇ ପ୍ରସଙ୍ଗରୁ ମଧ୍ୟ ଏ ଶିକ୍ଷା ଗ୍ରହଣ କରିବା ଉଚିତ ଯେ ଶାଶୁ କିମ୍ବା ତାଙ୍କ ସମାନ ନିଜଠାରୁ ବଡ଼ କେହି ସ୍ତ୍ରୀ ଯାହା କିଛି କହିଲେ ବା ବ୍ୟବହାର କଲେ, ତାଙ୍କୁ ଖୁସୀ କରିବା ସଙ୍ଗେ ସଙ୍ଗେ ସହିଯିବା ଉଚିତ ଏବଂ କେବେ ପତିଙ୍କ ସହିତ ବିଦେଶକୁ ଯିବାକୁ ହେଲେ ନିର୍ମଳ ହୃଦୟରେ ଶାଶୁମାନଙ୍କୁ ପ୍ରଣାମ କରି, ସେମାନଙ୍କୁ ସନ୍ତୋଷ କରାଇ ସେବାରୁ ବଞ୍ଚିତ ହେଉଥିବାରୁ ହାର୍ଦ୍ଦିକ ପଶ୍ଚାତ୍ତାପ କରି ଯିବା ଉଚିତ । ଏହାଦ୍ୱାରା ବୋହୂମାନଙ୍କୁ ଶାଶୁଙ୍କର ଆଶୀର୍ବାଦ ଆପେ ଆପେ ପ୍ରାପ୍ତ ହେବ ।

## ନିରଭିମାନତା

ସୀତା ନିଜ ସମୟରେ ଲୋକପ୍ରସିଦ୍ଧ ପତିବ୍ରତା ଥିଲେ । ତାଙ୍କୁ ଆଉ କିଏ ପାତିବ୍ରତ୍ୟର ଉପଦେଶ କରିବ? ପରନ୍ତୁ ସୀତାଙ୍କୁ ନିଜର ପାତିବ୍ରତ୍ୟର କୌଣସି ଅଭିମାନ ନ ଥିଲା । ଅନସୂୟାଙ୍କ ଦ୍ୱାରା କରାଯାଇଥିବା ପାତିବ୍ରତ୍ୟର ଉପଦେଶ ସୀତା ବଡ଼ ଆଦରର ସହିତ ଶୁଣିଛନ୍ତି ଏବଂ ତାଙ୍କ ଚରଣରେ ପ୍ରଣାମ କରିଛନ୍ତି । ତାଙ୍କ ମନରେ ଏପରି ଭାବ କେବେ ଆସି ନ ଥିଲା ଯେ ମୁଁ ସବୁ କିଛି ଜାଣିଛି । ବରଂ ଅନସୂୟା ଦେବୀ ତାଙ୍କୁ କହୁଛନ୍ତି–

**ସୁନୁ ସୀତା ତଵ ନାମ ସୁମିରି ନାରି ପତିବ୍ରତ କରହିଁ ।**
**ତୋହି ପ୍ରାନପ୍ରିୟ ରାମ କହିଉଁ କଥା ସଂସାର ହିତ ॥**

ଏଥିରୁ ଏହି ଶିକ୍ଷା ଗ୍ରହଣ କରିବା ଉଚିତ ଯେ ନିଜଠାରୁ ବୟସରେ ବଡ଼ ଯାହା କିଛି ଉପଦେଶ ଦିଅନ୍ତି ତାହା ଅଭିମାନ ଛାଡ଼ି ଆଦର ସମ୍ମାନର ସହିତ ଶୁଣିବା ଏବଂ ଯଥାସାଧ୍ୟ ସେହି ଅନୁସାରେ ଚାଲିବା ଉଚିତ ।

## ଗୁରୁଜନସେବା ଓ ମର୍ଯ୍ୟାଦା

ଗୁରୁଜନଙ୍କର ସେବା ଓ ମର୍ଯ୍ୟାଦାରେ ସୀତାଙ୍କ ମନ କେତେ ଲାଗି ରହିଥିଲା, ଏଇ କଥା ବୁଝିବା ପାଇଁ ମହାରାଜ ଜନକଙ୍କର ଚିତ୍ରକୂଟ ଯାତ୍ରା ପ୍ରସଙ୍ଗ ସ୍ମରଣ କରିବା ଉଚିତ । ଭରତ ବନକୁ ଯିବା ପରେ ରାଜା ଜନକ ମଧ୍ୟ ରାମଙ୍କ ସହିତ ମିଳିବା ପାଇଁ ଚିତ୍ରକୂଟରେ ପହଞ୍ଚିଲେ । ସୀତାଙ୍କର ମାତା ଶ୍ରୀରାମଙ୍କ ମାତାମାନଙ୍କ ସହ–ସୀତାଙ୍କ ଶାଶୁମାନଙ୍କ ସହ ଭେଟିଥିଲେ ଏବଂ ସୀତାଙ୍କୁ ସଙ୍ଗରେ ନେଇ ନିଜ ବସାଗୃହକୁ ଆସିଥିଲେ । ସୀତାଙ୍କୁ ତପସ୍ୱିନୀ ବେଶରେ ଦେଖି ସମସ୍ତେ ଦୁଃଖିତ ହୋଇଥିଲେ, କିନ୍ତୁ ମହାରାଜ ଜନକ ନିଜ କନ୍ୟାର ଏହି ଆଚରଣରେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇ କହିଛନ୍ତି–

**ପୁତ୍ରି ପବିତ୍ର କିଏ କୁଲ ଦୋଉ । ସୁଜସ ଧଵଲ ଜଗୁ କହ ସବୁ କୋଉ ॥**

ପିତାମାତା ବଡ଼ ପ୍ରେମରେ ହୃଦୟରେ ଲଗାଇ ଅନେକ ପ୍ରକାର ଶିକ୍ଷା ଓ ଆଶିଷ ଦେଇଥିଲେ । କଥାବାର୍ତ୍ତା ହେଉ ହେଉ ରାତି ଅଧିକ

ହୋଇଯାଏ । ସୀତା ମନରେ ଭାବନ୍ତି ଯେ ଶାଶୁମାନଙ୍କର ସେବା ଛାଡ଼ି ଏହି ଅବସ୍ଥାରେ ରାତିରେ ଏଠାରେ ରହିବା ଅନୁଚିତ, କିନ୍ତୁ ସ୍ୱଭାବତଃ ଲଜ୍ଜାଶୀଳା ସୀତା ସଙ୍କୋଚବଶତଃ ମନର କଥା ବାପା-ମାଙ୍କୁ କହିପାରୁ ନ ଥିଲେ ।

**କହତି ନ ସୀୟ ସକୁଚି ମନ ମାହୀଁ । ଇହାଁ ବସବ ରଜନୀଁ ଭଲ ନାହୀଁ ॥**

ଚତୁର ମାତା ସୀତାଙ୍କ ମନୋଭାବ ଜାଣି ନେଇଥିଲେ ଏବଂ ସୀତାଙ୍କ ଶୀଳସ୍ୱଭାବକୁ ମନେ ମନେ ପ୍ରଶଂସା କରି ପିତାମାତା ସୀତାଙ୍କୁ କୌସଲ୍ୟାଙ୍କ ବସାଗୃହକୁ ପଠାଇ ଦେଇଥିଲେ । ଏହି ପ୍ରସଙ୍ଗରୁ ମଧ୍ୟ ସ୍ତ୍ରୀମାନଙ୍କର ସେବା ଓ ମର୍ଯ୍ୟାଦାର ଶିକ୍ଷା ନେବା ଉଚିତ ।

## ନିର୍ଭୟତା

ସୀତାଙ୍କର ତେଜ ଓ ନିର୍ଭୟତାକୁ ଦେଖନ୍ତୁ । ଯେଉଁ ଦୁର୍ଦ୍ଦାନ୍ତ ରାବଣର ନାମ ଶୁଣି ଦେବତାମାନେ ମଧ୍ୟ ଥରୁଥିଲେ, ତାକୁ ସୀତା ନିର୍ଭୟତାର ସହିତ କିପରି କଥା କହୁଥିଲେ । ରାବଣ ହାତରେ ପଡ଼ି ସୀତା ଅତି କ୍ରୋଧରେ ତାକୁ ତିରସ୍କାର କରି କହନ୍ତି–'ଆରେ ଦୁଷ୍ଟ ନିଶାଚର! ତୋର ଆୟୁ ପୂରି ଗଲାଣି, ଆରେ ମୂର୍ଖ! ତୁ ଶ୍ରୀରାମଚନ୍ଦ୍ରଙ୍କ ସହଧର୍ମିଣୀଙ୍କୁ ହରଣ କରି ନିଆଁକୁ ଲୁଗାରେ ବାନ୍ଧି ଚାଲିବାକୁ ଚାହୁଁଛୁ । ତୋର ଓ ଶ୍ରୀରାମଚନ୍ଦ୍ରଙ୍କ ମଧ୍ୟରେ ଏତିକି ଫରକ ଯେ ସିଂହ ଓ ଶୃଗାଳ, ସମୁଦ୍ର ଓ ନାଳ, ଅମୃତ ଓ କାଞ୍ଜି, ସୁନା ଓ ଲୁହା, ଚନ୍ଦନ ଓ କାଦୁଅ, ହାତୀ ଓ ବିଲେଇ, ଗରୁଡ଼ ଓ କୁଆ ତଥା ହଂସ ଓ ଶାଗୁଣା ମଧ୍ୟରେ ଯେତିକି ଫରକ ଅଟେ । ମୋର ଅମିତ ପ୍ରଭାବଶାଳୀ ସ୍ୱାମୀ ଥାଉଁ ଥାଉଁ ତୁ ମୋତେ ହରଣ କରିବା ତ ମାଛି ଘିଅ ପିଇ ମୃତ୍ୟୁବଶ ହେବା ପରି, ତୁ ମଧ୍ୟ କାଳର କରାଳ ଗ୍ରାସରେ ଚାଲିଯିବୁ ।' ଏଥିରୁ ଏହା ଶିକ୍ଷା କରିବା ଉଚିତ ଯେ ପରମାତ୍ମାଙ୍କ ବଳରେ କୌଣସି ବି ଅବସ୍ଥାରେ ମନୁଷ୍ୟକୁ ଡରିବା ଉଚିତ ନୁହେଁ । ଅନ୍ୟାୟର ପ୍ରତିବାଦ ନିର୍ଭୟତାର ସହିତ କରିବା ଉଚିତ । ପରମାତ୍ମାଙ୍କ ବଳର ସଚ୍ଚା ଭରସା ହେଲେ ତ ରାବଣକୁ ବଧ

କରି ସୀତାଙ୍କୁ ତାହାର କବଳରୁ ମୁକ୍ତ କରିବା ଭଳି ଭଗବାନ୍ ଆମକୁ ମଧ୍ୟ ବିପତ୍ତିରୁ ମୁକ୍ତ କରିଦେବେ ।

## ଧର୍ମ ପାଇଁ ପ୍ରାଣତ୍ୟାଗର ପ୍ରସ୍ତୁତି

ବିପତ୍ତିରେ ପଡ଼ି କେହି ଧର୍ମକୁ ତ୍ୟାଗ କରିବା ଅନୁଚିତ । ଏଇ ବିଷୟରେ ସୀତାଙ୍କ ଉଦାହରଣ ସର୍ବୋତ୍ତମ । ଲଙ୍କାର ଅଶୋକବନରେ ସୀତାଙ୍କ ଧର୍ମନାଶ ପାଇଁ ଦୁଷ୍ଟ ରାବଣ ଆଦୌ କମ୍ ଚେଷ୍ଟା ହୋଇ ନଥିଲା । ରାକ୍ଷସୀମାନେ ସୀତାଙ୍କୁ ଭୟ ଓ ପ୍ରଲୋଭନ ଦେଖାଇ ବହୁତ ଯନ୍ତ୍ରଣା ଦେଲେ, ପରନ୍ତୁ ସୀତା ତ ସୀତା ହିଁ ଥିଲେ । ଧର୍ମତ୍ୟାଗର ପ୍ରଶ୍ନ ତ ଏଠାରେ ଉଠି ନ ପାରେ, ସୀତା ତ ଛଳରେ ମଧ୍ୟ ନିଜର ବାହାର ବ୍ୟବହାରରେ ବିପତ୍ତିରୁ ରକ୍ଷା କରିବା ପାଇଁ କେବେ ଦୋଷ ହେବାକୁ ଦେଇ ନ ଥିଲେ । ତାଙ୍କର ନିର୍ମଳ ଓ ଧର୍ମରେ ପରିପୂର୍ଣ୍ଣ ମନରେ କେବେ ମନ୍ଦ ସ୍ଫୁରଣ ଆସି ପାରିବ ନାହିଁ । ନିଜ ଧର୍ମରେ ଅଟଳ ରହି ସୀତା ଦୁଷ୍ଟ ରାବଣକୁ ସର୍ବଦା ତୀବ୍ର ଓ ନୀତିଯୁକ୍ତ ଶବ୍ଦରେ ତିରସ୍କାର ହିଁ କରୁଥିଲେ । ଥରେ ରାବଣର ବାକ୍ୟବାଣକୁ ସହି ନ ପାରିବା ସମୟରେ ଏବଂ ରାବଣ ଦ୍ୱାରା ମାୟାରେ ଶ୍ରୀରାମ-ଲକ୍ଷ୍ମଣଙ୍କୁ ମୃତ ଦେଖାଇବା କାରଣରୁ ସେ ମରିବା ପାଇଁ ପ୍ରସ୍ତୁତ ହୋଇ ଯାଇଥିଲେ, ପରନ୍ତୁ ଧର୍ମତ୍ୟାଗର ଭାବନା ସ୍ୱପ୍ନରେ ମଧ୍ୟ ତାଙ୍କ ମନରେ ଉଠି ନ ଥିଲା । ସେ ଦିନରାତି ଭଗବାନ୍ ଶ୍ରୀରାମଙ୍କ ଚରଣ ଧ୍ୟାନରେ ଲାଗି ରହିଥିଲେ । ସୀତା ଶ୍ରୀରାମଚନ୍ଦ୍ରଙ୍କୁ ହନୁମାନ୍ ଦ୍ୱାରା ଯେଉଁ ସନ୍ଦେଶ କହିଥିଲେ, ସେଥିରୁ ଜଣାଯାଇ ପାରେ ଯେ ତାଙ୍କର କିପରି ପବିତ୍ର ସ୍ଥିତି ଥିଲା–

**ନାମ ପାହରୂ ଦିୱସ ନିସି ଧ୍ୟାନ ତୁମ୍ହାର କପାଟ ।**
**ଲୋଚନ ନିଜ ପଦ ଜଂତ୍ରିତ ଜାହିଁ ପ୍ରାନ କେହିଁ ବାଟ ॥**

ଏଥିରୁ ସ୍ତ୍ରୀମାନଙ୍କୁ ଏଇ ଶିକ୍ଷା ଗ୍ରହଣ କରିବା ଉଚିତ ଯେ ପତିଙ୍କ ବିୟୋଗରେ ଭୀଷଣ ଆପତ୍ତି ଆସିଲେ ମଧ୍ୟ ପତିଙ୍କ ଚରଣରେ ଧ୍ୟାନ ରହିବା ଉଚିତ । ମନରେ ଭଗବାନଙ୍କ ବଳ ଉପରେ ପୂରା ବୀରତା,

ଧୀରତା ଓ ତେଜ ରହେ । ସ୍ୱଧର୍ମ ପାଳନରେ ପ୍ରାଣକୁ ମଧ୍ୟ ସର୍ବଦା ଆହୁତି ଦେବାକୁ ପ୍ରସ୍ତୁତ ରହିବା ଉଚିତ । ଧର୍ମ ଯାଇ ପ୍ରାଣ ରହିଲେ କିଛି ଲାଭ ନାହିଁ, ପରନ୍ତୁ ପ୍ରାଣ ଯାଇ ଧର୍ମ ରହିଲେ ହିଁ କଲ୍ୟାଣ–**'ସ୍ୱଧର୍ମେ ନିଧନଂ ଶ୍ରେୟଃ'** । (ଗୀତା ୩ । ୩୫)

## ସାବଧାନତା

ସାତାଙ୍କର ସାବଧାନତାକୁ ଦେଖନ୍ତୁ । ହନୁମାନ୍ ଅଶୋକବନରେ ସୀତାଙ୍କ ପାଖକୁ ଯାଇଥିବା ବେଳେ ସୀତା ନିଜ ବୁଦ୍ଧି କୌଶଳରେ ସବୁ ପ୍ରକାରେ ତାଙ୍କୁ ପରୀକ୍ଷା କରିଥିଲେ । ହନୁମାନ୍ ବାସ୍ତବରେ ଶ୍ରୀରାମଙ୍କ ଦୂତ, ଶକ୍ତିସମ୍ପନ୍ନ ଓ ମୋ ଅନ୍ୱେଷଣରେ ଆସିଛନ୍ତି–ଏହି କଥାର ପୂର୍ଣ୍ଣ ବିଶ୍ୱାସ ନ ହେବା ପର୍ଯ୍ୟନ୍ତ ସେ ଖୋଲାଖୋଲି କଥାବାର୍ତ୍ତା କରି ନ ଥିଲେ ।

## ଦାମ୍ପତ୍ୟ ପ୍ରେମ

ପୂର୍ଣ୍ଣ ବିଶ୍ୱାସ ହୋଇଯିବା ପରେ ସୀତା ପ୍ରଥମେ ସ୍ୱାମୀ ଓ ଦେବରଙ୍କ କୁଶଳ ପଗ୍ଚରିଥିଲେ, ପୁଣି ଆଖିରୁ ଲୁହ ବୁହାଇ କରୁଣାପୂର୍ଣ୍ଣ ଶବ୍ଦରେ କହିଥିଲେ, 'ହନୁମାନ୍! ରଘୁନାଥଙ୍କ ଚିତ୍ତ ବଡ଼ କୋମଳ । କୃପା କରିବା ତ ତାଙ୍କର ସ୍ୱଭାବ । ପୁଣି ମୋଠାରେ ଏପରି ନିଷ୍ଠୁରତା କାହିଁକି କରୁଛନ୍ତି? ସେ ତ ସ୍ୱଭାବରେ ସେବକକୁ ସୁଖ ଦିଅନ୍ତି ପୁଣି ମୋତେ ସେ କାହିଁକି ପାସୋରି ଦେଇଛନ୍ତି? ଶ୍ରୀରଘୁନାଥ ମୋତେ କେବେ ମନେ ପକାନ୍ତି ତ? ହେ ଭାଇ! କେବେ ସେହି ଶ୍ୟାମସୁନ୍ଦରଙ୍କର କୋମଳ ମୁଖକମଳକୁ ଦେଖି ମୋର ଏ ଆଖି ଶୀତଳ ହେବ? ଅହୋ! ନାଥ ମୋତେ ପୂରାପୂରି ପାସୋରି ଦେଲେ ।' ଏତିକି କହି ସୀତା କାନ୍ଦିବାକୁ ଲାଗିଲେ, ତାଙ୍କ କଥା ବନ୍ଦ ହୋଇଗଲା ।

**ବଚନୁ ନ ଆଵ ନୟନ ଭରେ ବାରୀ । ଅହହ ନାଥ ହୌଁ ନିପଟ ବିସାରୀ ॥**

ଏହାପରେ ହନୁମାନ୍ ଶ୍ରୀରାମଙ୍କ ପ୍ରେମ-ସନ୍ଦେଶ ଶୁଣାଇବା ବେଳେ କହିଲେ, ହେ ମାତା! ଶ୍ରୀରାମଙ୍କ ପ୍ରେମ ତୁମଠାରୁ ଦୁଇଗୁଣ । ସେ କହିଲେ–

**ତତ୍ତ୍ୱ ପ୍ରେମ କର ମମ ଅରୁ ତୋରା। ଜାନତ ପ୍ରିୟା ଏକୁ ମନୁ ମୋରା॥**
**ସୋ ମନୁ ସଦା ରହତ ତୋହି ପାହାଁ। ଜାନୁ ପ୍ରୀତି ରସୁ ଏତନେହି ମାହାଁ॥**

ଏହା ଶୁଣିବା ମାତ୍ରେ ସୀତା ଗଦ୍‌ଗଦ ହୋଇଗଲେ। ଶ୍ରୀସୀତା-ରାମଙ୍କର କିପରି ପାରସ୍ପରିକ ଆଦର୍ଶ ପ୍ରେମ। ଜଗତର ସ୍ତ୍ରୀ-ପୁରୁଷ ଯଦି ଏଇ ପ୍ରେମକୁ ଆଦର୍ଶ କରି ପରସ୍ପର ଏଇ ପ୍ରକାର ପ୍ରେମ କରିବାକୁ ଲାଗିବେ ତେବେ ଗୃହସ୍ଥ ଜୀବନ ସୁଖମୟ ହୋଇଯିବ।

## ପରପୁରୁଷ ପ୍ରତି ସଂଯମ

ସୀତାଦେବୀ ଜୟନ୍ତ ଘଟଣାକୁ ସ୍ମରଣ କରାଇ ଦେଇ କହିଲେ– 'ହେ କପିବର! ତୁମେ ବତାଇଦିଅ ମୁଁ ଏଇ ଅବସ୍ଥାରେ କ'ଣ ବଞ୍ଚି ପାରିବି? ଶତ୍ରୁକୁ ଦଣ୍ଡ ଦେବା ପାଇଁ ଶ୍ରୀରାମ-ଲକ୍ଷ୍ମଣ ସମର୍ଥ ହେଲେ ମଧ୍ୟ ମୋତେ ସ୍ମରଣ କରୁ ନାହାନ୍ତି, ଏଥିରୁ ମୋତେ ଜଣାପଡୁଛି ଯେ ମୋର ଦୁଃଖଭୋଗ ଶେଷ ହୋଇନାହିଁ।' ଏତିକି କହୁ କହୁ ସୀତାଙ୍କ ନେତ୍ରରୁ ଲୁହର ଧାରା ବହିବାକୁ ଲାଗିଲା, ସେତେବେଳେ ତାଙ୍କୁ ହନୁମାନ୍ ଆଶ୍ୱାସନା ଦେଇ କହିଲେ, 'ହେ ମାତା! କିଛି ଦିନ ଧୈର୍ଯ୍ୟ ଧର! ଶତ୍ରୁମାନଙ୍କୁ ସଂହାର କରିବାକୁ ସମର୍ଥ କୃତାତ୍ମା ଶ୍ରୀରାମ ଓ ଲକ୍ଷ୍ମଣ ଅଳ୍ପଦିନ ମଧ୍ୟରେ ଏଠାକୁ ଆସି ରାବଣକୁ ବଧ କରି ତୁମକୁ ଅବଧପୁରୀକୁ ନେଇଯିବେ। ତୁମେ ଚିନ୍ତା କର ନାହିଁ। ଯଦି ତୁମର ବିଶେଷ ଇଚ୍ଛା ହେଉଛି ତେବେ ମୋତେ ଆଜ୍ଞା ଦିଅ, ମୁଁ ଶ୍ରୀରାମ ଓ ତୁମରି ଦୟାରେ ରାବଣକୁ ବଧ କରି ଏବଂ ଲଙ୍କାକୁ ନଷ୍ଟ କରି ତୁମକୁ ପ୍ରଭୁ ଶ୍ରୀରାମଙ୍କ ନିକଟକୁ ନେଇଯାଇ ପାରିବି। ଅଥବା ହେ ଦେବି! ତୁମେ ମୋ ପିଠି ଉପରେ ବସି ଯାଅ, ମୁଁ ଆକାଶମାର୍ଗରେ ମହାସାଗରକୁ ଲଂଘି ଯିବି। ଏଠିକାର ରାକ୍ଷସ ମୋତେ ଧରି ପାରିବେ ନାହିଁ। ମୁଁ ଶୀଘ୍ର ତୁମକୁ ଶ୍ରୀରାମଙ୍କ ନିକଟକୁ ନେଇଯିବି।' ହନୁମାନଙ୍କ ବଚନ ଶୁଣି ତାର ବଳପରାକ୍ରମ ପରୀକ୍ଷା ନେଇ ସାରିବା ପରେ ସୀତା କହିଲେ, 'ହେ ବାନରଶ୍ରେଷ୍ଠ ! ମୁଁ ପତିଭକ୍ତିକୁ ପାଳନ କରୁଛି। ଏଣୁ ମୁଁ ନିଜର ସ୍ୱାମୀ ଶ୍ରୀରାମଚନ୍ଦ୍ରଙ୍କୁ ଛାଡ଼ି ସ୍ୱେଚ୍ଛାରେ କୌଣସି

ବି ଅନ୍ୟ ପୁରୁଷର ଅଙ୍ଗ ସ୍ପର୍ଶ କରିବାକୁ ଇଚ୍ଛା କରେ ନାହିଁ–

**ଭର୍ତ୍ତୁର୍ଭକ୍ତିଂ ପୁରସ୍କୃତ୍ୟ ରାମାଦନ୍ୟସ୍ୟ ବାନର ।**
**ନାହଂ ସ୍ପ୍ରଷ୍ଟୁଂ ସ୍ୱତୋ ଗାତ୍ରମିଚ୍ଛେୟଂ ବାନରୋତ୍ତମ ॥**

(ବା. ରା. ୫ । ୩୭ । ୬୨)

'ଦୁଷ୍ଟ ରାବଣ ବଳପୂର୍ବକ ହରଣ କରିବା ସମୟରେ ମୋତେ ସ୍ପର୍ଶ କରିଥିଲା, ସେଇ ସମୟରେ ମୁଁ ପରାଧୀନ ଥିଲି, ମୋର କିଛି ଶକ୍ତି ନ ଥିଲା । ଏବେ ତ ଶ୍ରୀରାମ ସ୍ୱୟଂ ଏଠାକୁ ଆସିବେ ଏବଂ ରାକ୍ଷସମାନଙ୍କ ସହିତ ରାବଣକୁ ବଧ କରି ମୋତେ ସଙ୍ଗରେ ନେଇଯିବେ, ଫଳରେ ତାଙ୍କର କୀର୍ତ୍ତିର ଶୋଭା ହେବ ।'

ବିଗ୍ଚର କରନ୍ତୁ, ହନୁମାନ୍ ପରି ସେବକ, ଯେ ସୀତାଙ୍କୁ ନିର୍ମଳ ହୃଦୟରେ ମାତାଙ୍କ ଠାରୁ ବଳି ବୁଝୁଛନ୍ତି ଏବଂ ସୀତା-ରାମଙ୍କ ଭକ୍ତି କରିବା ହିଁ ନିଜର ଜୀବନର ପରମ ଧ୍ୟେୟ ମାନନ୍ତି, ସୀତା ପାତିବ୍ରତ୍ୟଧର୍ମ ରକ୍ଷା ପାଇଁ, ଏପରି ଘୋର ବିପତ୍ତିକାଳରେ ନିଜର ସ୍ୱାମୀଙ୍କ ପାଖକୁ ଯିବା ପାଇଁ ମଧ୍ୟ ତାଙ୍କର ସ୍ପର୍ଶ କରିବାକୁ ଗ୍ଚହିଁଲେ ନାହିଁ । କିପରି ଅଦ୍‌ଭୁତ ଧର୍ମର ଆଗ୍ରହ । ଏଥିରୁ ଏହା ଶିଖିବା ଉଚିତ ଯେ ଖୁବ୍ ବଡ଼ ବିପଦ ସମୟରେ ମଧ୍ୟ ସ୍ତ୍ରୀ ଯଥାସାଧ୍ୟ ପରପୁରୁଷର ଅଙ୍ଗ ସ୍ପର୍ଶ କରିବା ଅନୁଚିତ ।

## ବିୟୋଗରେ ବ୍ୟାକୁଳତା

ଭଗବାନ୍ ଶ୍ରୀରାମଙ୍କଠାରେ ସୀତାଙ୍କର କେତେ ପ୍ରେମ ଥିଲା ଏବଂ ତାଙ୍କ ଦର୍ଶନ ପାଇଁ ସୀତାଙ୍କ ହୃଦୟରେ କେତେ ବ୍ୟାକୁଳତା ଥିଲା, ଏହି କଥାର କିଛି ଅଂଶ ସୀତାଙ୍କ ହରଣ ସମୟଠାରୁ ଲଙ୍କା ବିଜୟ ପର୍ଯ୍ୟନ୍ତ ବିବିଧ ବଚନରୁ ଏହା ପ୍ରମାଣିତ ହୁଏ । ଏଇ ପ୍ରସଙ୍ଗ ପଢୁ ପଢୁ ଏପରି କିଏ ଅଛନ୍ତି ଯେ ଯାହାଙ୍କ ହୃଦୟ କରୁଣାରେ ଭରି ନ ଯିବ? ପରନ୍ତୁ ସୀତାଙ୍କର ବାସ୍ତବ ବ୍ୟାକୁଳତାର ସବୁଠାରୁ ବଳି ପ୍ରମାଣ ଏଇ ଯେ ଶ୍ରୀରଘୁନାଥ ମଧ୍ୟ ତାଙ୍କ ପାଇଁ ବିରହବ୍ୟାକୁଳ ସ୍ତ୍ରୈଣ ମନୁଷ୍ୟ ଭଳି

ବିହ୍ୱଳ ହୋଇ ଉନ୍ମତ୍ତ ପରି କାନ୍ଦି ଓ ବିଳାପ କରି କରି ଋଷିକୁମାର, ସୂର୍ଯ୍ୟ, ପବନ, ପଶୁ-ପକ୍ଷୀ, ଜଡ଼ ବୃକ୍ଷ-ଲତାଙ୍କୁ ମଧ୍ୟ ସୀତାଙ୍କ କଥା ପଚ୍ଚାରୁଥିଲେ–

**ଆଦିତ୍ୟ ଭୋ ଲୋକକୃତାକୃତଜ୍ଞ ଲୋକସ୍ୟ ସତ୍ୟାନୃତକର୍ମସାକ୍ଷିନ୍ ।**
**ମମ ପ୍ରିୟା ସା କ୍ୱ ଗତା ହୃତା ବା ଶଂସସ୍ୱ ମେ ଶୋକହତସ୍ୟ ସର୍ବମ୍ ॥**
**ଲୋକେଷୁ ସର୍ବେଷୁ ନ ଗ୍ୱସ୍ତି କିଞ୍ଚିଦ୍ୟତ୍ତେ ନ ନିତ୍ୟଂ ବିଦିତଂ ଭବେତ୍ତତ୍ ।**
**ଶଂସସ୍ୱ ବାୟୋ କୁଳପାଳିନୀଂ ତାଂ ମୃତା ହୃତା ବା ପଥି ବର୍ତ୍ତତେ ବା ॥**

(ବା. ରା. ୩ । ୬୩ ।୧୬-୧୭)

'ଲୋକମାନଙ୍କର କୃତ୍ୟାକୃତ୍ୟକୁ ଜାଣୁଥିବା ହେ ସୂର୍ଯ୍ୟଦେବ! ତୁମେ ସତ୍ୟ ଓ ଅସତ୍ୟ କର୍ମର ସାକ୍ଷୀ । ମୋର ପ୍ରିୟାକୁ କେହି ହରଣ କରିନେଇଛି, ବା କେଉଁଠାକୁ ଗ୍ୱଲିଯାଇଛି, ଏଇ କଥା ତୁମକୁ ଭଲଭାବେ ଜଣା । ଅତଏବ ଶୋକରେ ପୀଡ଼ିତ ମୋତେ ସବୁକଥା ବତାଇ ଦିଅ । ହେ ବାୟୁଦେବ! ତିନି ଲୋକରେ ତୁମକୁ କିଛି ଅଛପା ନାହିଁ, ତୁମର ଗତି ସର୍ବତ୍ର । ଆମ କୁଳର ମର୍ଯ୍ୟାଦାକୁ ରକ୍ଷା କରୁଥିବା ସୀତା ମରିଗଲେ, ହୃତ ହୋଇଗଲେ ବା ବାଟରେ ବାଟଭୁଲା ହୋଇ ଯାଇଛନ୍ତି, ଯାହା କିଛି ହୋଇଛି ଯଥାର୍ଥ ଭାବେ କୁହ!'

**ହା ଗୁନ ଖାନି ଜାନକୀ ସୀତା । ରୂପ ସୀଲ ବ୍ରତ ନେମ ପୁନୀତା ॥**
**ଲଛିମନ ସମୁଝାଏ ବହୁ ଭାଁତୀ । ପୂଛତ ଚଲେ ଲତା ତରୁ ପାଁତୀ ॥**
**ହେ ଖଗ ମୃଗ ହେ ମଧୁକର ଶ୍ରେନୀ । ତୁହ୍ମ ଦେଖୀ ସୀତା ମୃଗନୈନୀ ॥**

× × × × ×

**ଏହି ବିଧି ଖୋଜତ ବିଲପତ ସ୍ୱାମୀ । ମନହୁଁ ମହା ବିରହୀ ଅତି କାମୀ ॥**

ଏଥିରୁ ଏହା ବୁଝିବା ଉଚିତ ନୁହେଁ ଯେ ଭଗବାନ୍ ଶ୍ରୀରାମ 'ମହାବିରହୀ ଓ ଅତିକାମୀ' ଥିଲେ । ସୀତାଙ୍କର ଶ୍ରୀରାମଙ୍କ ପ୍ରତି ଏତେ ପ୍ରେମ ଥିଲା ଏବଂ ସେ ତାଙ୍କ ପାଇଁ ଏତେ ବ୍ୟାକୁଳ ଥିଲେ ଯେ ଶ୍ରୀରାମଙ୍କୁ ମଧ୍ୟ ଏପରି ବ୍ୟବହାର କରିବାକୁ ପଡ଼ିଥିଲା । ଭଗବାନଙ୍କର ଏହି ପଣ ଯେ–

**ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହମ୍ ।**

(ଗୀତା ୪ ।୧୧)

ଶ୍ରୀରାମ 'ମହାବିରହୀ ଓ ଅତିକାମୀ' ସଦୃଶ ଲୀଳା କରି ଏଇ ସିଦ୍ଧାନ୍ତକୁ ଚରିତାର୍ଥ କରିଥିଲେ । ଏଥିରୁ ଏଇ ଶିକ୍ଷା ନେବା ଉଚିତ ଯେ ଆମେ ଭଗବାନଙ୍କୁ ପାଇବାକୁ ବ୍ୟାକୁଳ ହେଲେ ଭଗବାନ୍ ମଧ୍ୟ ଆମକୁ ପାଇବାକୁ ବ୍ୟାକୁଳ ହେବେ । ଅତଏବ ଆମ ସମସ୍ତଙ୍କୁ ପରମାତ୍ମାଙ୍କ ପାଇଁ ଏପରି ବ୍ୟାକୁଳ ହେବାକୁ ହେବ ।

## ଅଗ୍ନି-ପରୀକ୍ଷା

ରାବଣ ବଧ ହେଲା, ପ୍ରଭୁ ଶ୍ରୀରାମଙ୍କ ଆଜ୍ଞାରେ ସୀତାଙ୍କୁ ସ୍ନାନ କରାଇ ଏବଂ ବସ୍ତ୍ରାଭୂଷଣ ପିନ୍ଧାଇ ଦେଇ ବିଭୀଷଣ ଶ୍ରୀରାମଙ୍କ ପାଖକୁ ନେଇ ଆସିଲେ । ବହୁତ ଦିନ ପରେ ପ୍ରିୟ ପତି ଶ୍ରୀରଘୁବୀରଙ୍କ ପୂର୍ଣ୍ଣିମାଚନ୍ଦ୍ର ସଦୃଶ ମୁଖକୁ ଦେଖି ସୀତାଙ୍କ ସମସ୍ତ ଦୁଃଖ ନାଶ ହୋଇଗଲା ଏବଂ ତାଙ୍କର ମୁଖ ନିର୍ମଳ ଚନ୍ଦ୍ର ଭଳି ଚମକି ଉଠିଲା । ପରନ୍ତୁ ଶ୍ରୀରାମ ସ୍ପଷ୍ଟ ଭାବରେ କହିଦେଲେ– 'ମୁଁ ମୋର କର୍ତ୍ତବ୍ୟ ପାଳନ କଲି । ରାବଣକୁ ବଧ କରି ତୁମକୁ ଦୁଷ୍ଟକବଳରୁ ମୁକ୍ତ କଲି, ପରନ୍ତୁ ତୁମେ ରାବଣ ଘରେ ରହି ସାରିଛ, ରାବଣ ତୁମକୁ ଖରାପ ଦୃଷ୍ଟିରେ ଦେଖିଛି, ଅତଏବ ଏବେ ମୋର ତୁମଠାରେ କିଛି ଆବଶ୍ୟକତା ନାହିଁ । ତୁମେ ନିଜର ଇଚ୍ଛାନୁସାରେ ଯୁଆଡ଼େ ଚାହୁଁଛ ସେଆଡ଼କୁ ଚାଲିଯାଅ । ମୁଁ ତୁମକୁ ଗ୍ରହଣ କରି ପାରିବି ନାହିଁ ।

**ନାସ୍ତି ମେ ତ୍ୱଯ୍ୟଭିଷ୍ୱଙ୍ଗୋ ଯଥେଷ୍ଟଂ ଗମ୍ୟତାମିତି ।**

(ବା. ରା. ୬ ।୧୧୫ ।୨୧)

ଶ୍ରୀରାମଙ୍କର ଏଇ ଅଶ୍ରୁତପୂର୍ବ କଠୋର ଓ ଭୟଙ୍କର ବଚନକୁ ଶୁଣି ଦିବ୍ୟ ସତୀ ସୀତାଙ୍କର ଯାହା କିଛି ଦଶା ହେଲା ତାହା ବର୍ଣ୍ଣନା କରାଯାଇପାରିବ ନାହିଁ । ସ୍ୱାମୀଙ୍କ ବଚନବାଣ ଦ୍ୱାରା ସୀତାଙ୍କ ସମସ୍ତ ଅଙ୍ଗରେ ଭୀଷଣ କ୍ଷତ ହୋଇଗଲା । ସେ ସକସକ ହୋଇ କାନ୍ଦିବାକୁ

ଲାଗିଲେ। ପୁଣି କରୁଣାକୁ ମଧ୍ୟ କରୁଣାସାଗରରେ ବୁଡ଼ାଇ ଦେଉଥିବା ଶବ୍ଦରେ ସେ ଧୀରେ ଧୀରେ ଗଦ୍‌ଗଦ ବାଣୀରେ କହିଲେ–

'ହେ ସ୍ୱାମିନ୍! ଆପଣ ସାଧାରଣ ମନୁଷ୍ୟଙ୍କ ପରି ମୋତେ କାହିଁକି ଏପରି କଠୋର ଓ ଅନୁଚିତ ଶବ୍ଦ କହୁଛନ୍ତି? ମୁଁ ନିଜର ଚରିତ୍ରର ଶପଥ ନେଇ କହୁଛି ଯେ ଆପଣ ମୋ ଉପରେ ବିଶ୍ୱାସ ରଖନ୍ତୁ। ହେ ପ୍ରାଣନାଥ! ରାବଣ ହରଣ କରିବା ସମୟରେ ମୋ ଶରୀରକୁ ସ୍ପର୍ଶ କରିବା ବେଳେ ମୁଁ ପରବଶ ଥିଲି। ଏଥିରେ ତ ଦୈବର ଦୋଷ। ଯଦି ଆପଣଙ୍କର ଏପରି କରିବାର ଥିଲା ତେବେ ହନୁମାନଙ୍କୁ ମୋ ପାଖକୁ ପଠାଇବା ବେଳେ ଯଦି ତ୍ୟାଗ କରି ଦେଇଥାନ୍ତେ ତେବେ ଏତେବେଳକୁ ମୁଁ ମୋର ପ୍ରାଣ ହିଁ ତ୍ୟାଗ କରି ଦେଇଥାନ୍ତି।' ଶ୍ରୀ ସୀତାଦେବୀ ଏପରି ବହୁତ କଥା କହିଲେ, କିନ୍ତୁ ଶ୍ରୀରାମ କିଛି ଜବାବ ଦେଲେ ନାହିଁ, ତେଣୁ ସୀତା ଦୀନତା ଓ ଚିନ୍ତାରେ ମଗ୍ନ ଲକ୍ଷ୍ମଣଙ୍କୁ କହିଲେ– 'ହେ ସୌମିତ୍ରେ! ଏପରି ମିଥ୍ୟାପବାଦରେ କଳଙ୍କିତ ହୋଇ ମୁଁ ବଞ୍ଚିବାକୁ ଚାହୁଁ ନାହିଁ। ମୋର ଦୁଃଖ ନିବୃତ୍ତି ପାଇଁ ତୁମେ ଏଠାରେ ଅଗ୍ନିଚିତା ପ୍ରସ୍ତୁତ କରି ଦିଅ। ମୋର ପ୍ରିୟ ପତି ମୋ ଗୁଣରେ ଅପ୍ରସନ୍ନ ହୋଇ ଜନସମୁଦାୟଙ୍କ ଉପସ୍ଥିତିରେ ମୋତେ ତ୍ୟାଗ କରିଛନ୍ତି, ଏବେ ମୁଁ ଅଗ୍ନିରେ ପ୍ରବେଶ କରି ଏଇ ଜୀବନକୁ ଶେଷ କରି ଦେବାକୁ ଚାହୁଁଛି।' ବୈଦେହୀ ସୀତାଙ୍କ ବଚନ ଶୁଣି ଲକ୍ଷ୍ମଣ ରାଗରେ ଲାଲ-ଲାଲ ଆଖିରେ ଥରେ ଶ୍ରୀରାମଙ୍କ ଆଡ଼େ ଦେଖିଲେ, ପରନ୍ତୁ ଶ୍ରୀରାମଙ୍କ ରୁଚିର ଅଧୀନରେ ରହିଥିବା ଲକ୍ଷ୍ମଣ ଆକାର ଓ ସଂକେତରୁ ଶ୍ରୀରାମଙ୍କ ଇଚ୍ଛା ବୁଝି ତାଙ୍କରି ଇଚ୍ଛା ଅନୁସାରେ ଚିତା ପ୍ରସ୍ତୁତ କରିଦେଲେ। ସୀତା ପ୍ରଜ୍ୱଳିତ ଅଗ୍ନି ପାଖକୁ ଯାଇ ଦେବତା ଓ ବ୍ରାହ୍ମଣଙ୍କୁ ପ୍ରଣାମ କରି ଦୁଇ ହାତ ଯୋଡ଼ି କହିଲେ–

**ଯଥା ମେ ହୃଦୟଂ ନିତ୍ୟଂ ନାପସର୍ପତି ରାଘବାତ୍।**
**ତଥା ଲୋକସ୍ୟ ସାକ୍ଷୀ ମାଂ ସର୍ବତଃ ପାତୁ ପାବକଃ॥**
**ଯଥା ମାଂ ଶୁଦ୍ଧଚରିତ୍ରାଂ ଦୁଷ୍ଟାଂ ଜାନାତି ରାଘବଃ।**
**ତଥା ଲୋକସ୍ୟ ସାକ୍ଷୀ ମାଂ ସର୍ବତଃ ପାତୁ ପାବକଃ॥**

(ବା. ରା. ୬।୧୧୬।୨୫-୨୬)

'ହେ ଅଗ୍ନିଦେବ! ଯଦି ମୋର ମନ କେବେହେଲେ ଶ୍ରୀରାମଚନ୍ଦ୍ରଙ୍କଠାରୁ ଅଲଗା ହୋଇ ନଥିବ ତେବେ ତୁମେ ମୋତେ ସବୁ ପ୍ରକାରେ ରକ୍ଷା କର। ଶ୍ରୀରଘୁନାଥ ମହାରାଜ ଶୁଦ୍ଧଚରିତ୍ରଯୁକ୍ତ ମୋତେ ବା ଦୁଷ୍ଟାକୁ ଯେଉଁ ପ୍ରକାରେ ଯଥାର୍ଥ ଜାଣି ପାରିବେ ସେପରି ହିଁ ମୋତେ ସେହି ପ୍ରକାରେ ରକ୍ଷା କର; କାରଣ ତୁମେ ସବୁ ଲୋକଙ୍କ ସାକ୍ଷୀ ଅଟ।' ଏତିକି କହି ଅଗ୍ନିକୁ ପ୍ରଦକ୍ଷିଣ କରି ସୀତା ନିଃଶଙ୍କ ହୃଦୟରେ ତନ୍ମଧ୍ୟରେ ପ୍ରବେଶ କଲେ। ସବୁଆଡ଼େ ହାହାକାର ବ୍ୟାପିଗଲା। ବ୍ରହ୍ମା, ଶିବ, କୁବେର, ଇନ୍ଦ୍ର, ଯମରାଜ ଓ ବରୁଣ ଆଦି ଦେବତା ଆସି ଶ୍ରୀରାମଙ୍କୁ ବୁଝାଇବାକୁ ଲାଗିଲେ। ବ୍ରହ୍ମା ବହୁତ କିଛି ରହସ୍ୟ କଥା କହିଲେ।

ଏତିକିବେଳେ ସର୍ବଲୋକସାକ୍ଷୀ ଭଗବାନ୍ ଅଗ୍ନିଦେବ ସୀତାଙ୍କୁ କୋଳରେ ନେଇ ଅକସ୍ମାତ୍ ପ୍ରକଟ ହୋଇଗଲେ ଏବଂ ବୈଦେହୀଙ୍କୁ ଶ୍ରୀରାମଙ୍କୁ ଅର୍ପଣ କରି କହିଲେ–

**ଏଷା ତେ ରାମ ବୈଦେହୀ ପାପମସ୍ୟାଂ ନ ବିଦ୍ୟତେ ॥**
**ନୈବ ବାଗ୍ଭି ନ ମନସା ନୈବ ବୁଦ୍ଧ୍ୟା ନ ଚକ୍ଷୁଷା ।**
**ସୁବୃତ୍ତା ବୃତ୍ତଶୌଟୀର୍ଯଂ ନ ତ୍ୱାମତ୍ୟଚରଚ୍ଛୁଭା ॥**
**ରାବଣେନାପନୀତୈଷା ବୀର୍ୟୋତ୍ସିକ୍ତେନ ରକ୍ଷସା ।**
**ତ୍ୱୟା ବିରହିତା ଦୀନା ବିବଶା ନିର୍ଜନେ ସତୀ ॥**
**ରୁଦ୍ଧା ଚାନ୍ତଃପୁରେ ଗୁପ୍ତା ତ୍ୱଚ୍ଚିତ୍ତା ତ୍ୱତ୍ପରାୟଣା ।**
**ରକ୍ଷିତା ରାକ୍ଷସୀଭିଶ୍ଚ ଘୋରାଭିର୍ଘୋରବୁଦ୍ଧିଭିଃ ॥**
**ପ୍ରଲୋଭ୍ୟମାନା ବିବିଧଂ ତର୍ଜ୍ୟମାନା ଚ ମୈଥିଳୀ ।**
**ନାଚିନ୍ତୟତ ତଦ୍ରକ୍ଷସ୍ତ୍ୱଦ୍‌ଗତେନାନ୍ତରାତ୍ମନା ॥**
**ବିଶୁଦ୍ଧଭାବାଂ ନିଷ୍ପାପାଂ ପ୍ରତିଗୃହ୍ଣୀଷ୍ୱ ମୈଥିଳୀମ୍ ।**
**ନ କିଞ୍ଚିଦଭିଧାତବ୍ୟା ଅହମାଜ୍ଞାପୟାମି ତେ ॥**

(ବା. ରା. ୬।୧୧୮।୫-୧୦)

'ହେ ରାମ! ତୁମର ଏଇ ବୈଦେହୀ ସୀତାଙ୍କୁ ଗ୍ରହଣ କର। ଏହାଙ୍କଠାରେ କିଛି ବି ପାପ ନାହିଁ। ହେ ଚରିତ୍ରାଭିମାନୀ ରାମ! ଏଇ

ଶୁଭଲକ୍ଷଣା ସୀତା ବାଣୀ, ମନ, ବୁଦ୍ଧି ବା ନେତ୍ରଦ୍ୱାରା କେଭେ ତୁମର ଉଲ୍ଲଂଘନ କରି ନାହାନ୍ତି। ନିର୍ଜନ ବନରେ ତୁମେ ଏହାଙ୍କ ପାଖରେ ନ ଥିବାବେଳେ ସେ ବିଗ୍ୱରୀ ନିରୁପାୟ ଓ ବିବଶ ଥିଲେ। ଏଣୁ ବଳଗର୍ବିତ ରାବଣ ଏହାଙ୍କୁ ବଳପୂର୍ବକ ହରଣ କରି ନେଇଥିଲା। ଯଦ୍ୟପି ଏହାଙ୍କୁ ଅନ୍ତଃପୁରରେ ରଖା ଯାଇଥିଲା ଏବଂ ଅତ୍ୟନ୍ତ କ୍ରୂର ସ୍ୱଭାବଯୁକ୍ତ ରାକ୍ଷସୀମାନେ ପହରା ଦେଉଥିଲେ, ଅନେକ ପ୍ରକାର ପ୍ରଲୋଭନ ଦେଉଥିଲେ ଏବଂ ତିରସ୍କାର ମଧ୍ୟ କରୁଥିଲେ, ପରନ୍ତୁ ତୁମଠାରେ ମନ ଲଗାଇଥିବା ତୁମରି ପରାୟଣ ହୋଇଥିବା ସୀତା ତୁମ ଛଡ଼ା ମନରେ କେଭେ ଅନ୍ୟର ବିଗ୍ୱର କରି ନାହାନ୍ତି। ଏହାଙ୍କର ଅନ୍ତଃକରଣ ଶୁଦ୍ଧ, ଇଏ ନିଷ୍ପାପ। ମୁଁ ତୁମକୁ ଆଜ୍ଞା ଦେଉଛି, ତୁମେ କୌଣସି ପ୍ରକାର ଶଙ୍କା ନ କରି ଏହାଙ୍କୁ ଗ୍ରହଣ କର।'

ଅଗ୍ନିଦେବଙ୍କ ବଚନ ଶୁଣି ମର୍ଯ୍ୟାଦା ପୁରୁଷୋତ୍ତମ ଭଗବାନ୍ ଶ୍ରୀରାମ ବହୁତ ପ୍ରସନ୍ନ ହେଲେ, ତାଙ୍କର ନେତ୍ର ହର୍ଷରେ ଭରିଗଲା ଏବଂ ସେ କହିଲେ–

'ହେ ଅଗ୍ନିଦେବ! ଏଇ ପ୍ରକାର ସୀତାଙ୍କର ଶୁଦ୍ଧି ଆବଶ୍ୟକ ଥିଲା, ମୁଁ ଏପରି ଗ୍ରହଣ କରି ଦେଇଥିଲେ ତ ଲୋକେ କହିଥାନ୍ତେ ଯେ ଦଶରଥ ପୁତ୍ର ରାମ ମୂର୍ଖ ଓ କାମୀ। (କିଛି ଲୋକ ତ ସୀତାଙ୍କ ଚରିତ୍ର ଉପରେ ସନ୍ଦେହ କରିଥାନ୍ତେ, ଯଦ୍ଦ୍ୱାରା ତାଙ୍କର ଗୌରବ କମି ଯାଇଥାନ୍ତା, ଆଜି ଏଇ ଅଗ୍ନିପରୀକ୍ଷା ଦ୍ୱାରା ସୀତାଙ୍କର ଓ ମୋର ଦୁହିଁଙ୍କ ମୁଖ ଉଜ୍ଜ୍ୱଳ ହୋଇଗଲା।) ମୁଁ ଜାଣିଛି ଯେ ଜନକନନ୍ଦିନୀ ସୀତା ଅନନ୍ୟହୃଦୟା ଏବଂ ସର୍ବଦା ମୋର ଇଚ୍ଛାନୁସାରେ ଚଳିଥାନ୍ତି। ସମୁଦ୍ର ଯେପରି ନିଜର ମର୍ଯ୍ୟାଦା ଲଙ୍ଘନ କରେ ନାହିଁ, ସେଇ ପ୍ରକାର ଏଇ ମଧ୍ୟ ନିଜର ତେଜଦ୍ୱାରା ମର୍ଯ୍ୟାଦାରେ ରହିଥାନ୍ତି। ଦୁଷ୍ଟାତ୍ମା ରାବଣ ପ୍ରଦୀପ୍ତ ଅଗ୍ନିଜ୍ୱାଳା ପରି ଅପ୍ରାପ୍ତା ଏଇ ସୀତାଙ୍କୁ ସ୍ପର୍ଶ କରି ପାରି ନ ଥିଲା। ସୂର୍ଯ୍ୟକାନ୍ତି ସଦୃଶ ସୀତା ମୋଠାରୁ ଅଭିନ୍ନ। ଯେପରି ଆତ୍ମବାନ୍ ପୁରୁଷ କୀର୍ତ୍ତିକୁ ତ୍ୟାଗ କରି ପାରେ ନାହିଁ ସେହିପ୍ରକାର ମୁଁ ତିନିଲୋକରେ ବିଶୁଦ୍ଧ ସୀତାଙ୍କୁ ବାସ୍ତବରେ କେବେ ତ୍ୟାଗ କରି ପାରିବି ନାହିଁ।

ଏତିକି କହି ଭଗବାନ ଶ୍ରୀରାମ ପ୍ରିୟା ସତୀ ସୀତାଙ୍କୁ ଗ୍ରହଣ କରି ଆନନ୍ଦରେ ନିମଗ୍ନ ହୋଇଗଲେ। ଏଇ ପ୍ରସଙ୍ଗରୁ ଏହା ଶିକ୍ଷା କରିବା ଉଚିତ ଯେ ସ୍ତ୍ରୀ କୌଣସି ବି ଅବସ୍ଥାରେ ପତିଙ୍କ ଉପରେ ଅସନ୍ତୁଷ୍ଟ ହେବେ ନାହିଁ ଏବଂ ତାଙ୍କୁ ସନ୍ତୋଷ କରିବା ପାଇଁ ନ୍ୟାୟ୍ୟଯୁକ୍ତ ଉଚିତ ଚେଷ୍ଟା କରିବେ।

## ଗୃହସ୍ଥ ଧର୍ମ

ସୀତା ନିଜର ସ୍ୱାମୀ ଓ ଦେବରଙ୍କ ସଙ୍ଗରେ ଅଯୋଧ୍ୟା ଫେରି ଆସିଲେ। ବଡ଼-ବୁଢ଼ୀ ସ୍ତ୍ରୀମାନଙ୍କୁ ଏବଂ ସମସ୍ତ ଶାଶୁଙ୍କର ଚରଣରେ ପ୍ରଣାମ କଲେ। ସବୁ ଆଡ଼ରୁ ସୁଖ ମାଡ଼ିଗଲା। ଏବେ ସୀତା ନିଜର ଶାଶୁମାନଙ୍କ ସେବାରେ ଲାଗିଗଲେ ଏବଂ ଏପରି ସେବା କଲେ ଯେ ସମସ୍ତେ ମୁଗ୍ଧ ହୋଇଯାଇଥିଲେ। ସୀତା ଗୃହସ୍ଥର ସମସ୍ତ କାମ ସୁଗ୍ଧୁରୁରୂପରେ କରୁଥିଲେ ଯଦ୍ଦ୍ୱାରା ସମସ୍ତେ ସନ୍ତୁଷ୍ଟ ଥିଲେ। ଏଥିରୁ ଏଇ ଶିକ୍ଷା ଗ୍ରହଣ କରିବା ଉଚିତ ଯେ ବିଦେଶରୁ ଫେରିବା ପରେ ଶାଶୁ ଓ ସମସ୍ତ ବଡ଼ ବୁଢ଼ୀ ସ୍ତ୍ରୀମାନଙ୍କୁ ପ୍ରଣାମ କରିବା ଏବଂ ଶାଶୁ ଆଦିଙ୍କୁ ନିର୍ମଳ ମନରେ ସେବା କରିବା ଉଚିତ ଏବଂ ଗୃହସ୍ଥର ସମସ୍ତ କାର୍ଯ୍ୟ ସୁଗ୍ଧୁରୁରୂପେ କରିବା ଉଚିତ।

## ସମାନ ବ୍ୟବହାର

ସୀତାଦେବୀ ଭରତ, ଲକ୍ଷ୍ମଣ ଓ ଶତ୍ରୁଘ୍ନ– ଏଇ ଦେବରମାନଙ୍କ ସହିତ ପୁତ୍ରପରି ବ୍ୟବହାର କରୁଥିଲେ ଏବଂ ଖିଆପିଆ ଆଦିରେ କୌଣସି ପ୍ରକାର ଭେଦଭାବ ରଖୁ ନ ଥିଲେ। ସ୍ୱାମୀ ଶ୍ରୀରାମଙ୍କ ପାଇଁ ଯେପରି ଭୋଜନ ପ୍ରସ୍ତୁତ କରୁଥିଲେ, ଠିକ୍ ସେପରି ସୀତାଦେବୀ ନିଜର ଦେବରମାନଙ୍କ ପାଇଁ ପ୍ରସ୍ତୁତ କରୁଥିଲେ। ଦେଖିବାକୁ ଏଇ କଥା ଅତି ଛୋଟ ପରି ଜ୍ଞାତ ହୁଏ କିନ୍ତୁ ଏପରି ବ୍ୟବହାରରେ ଦୋଷ ଆସିଯିବା କାରଣରୁ କେବଳ ଖାଇବା ବସ୍ତୁମାନଙ୍କରେ ଭେଦ ରଖିବା ଦ୍ୱାରା ଭାରତର

ହଜାର ହଜାର ବହୁକୁଟୁମ୍ବୀ ପରିବାର ମନ୍ଦଦଶା ଭୋଗ କରୁଛନ୍ତି। ସୀତାଦେବୀଙ୍କ ଏଇ ବ୍ୟବହାରରୁ ସ୍ତ୍ରୀମାନଙ୍କର ଝିଆପିଆରେ ସମାନ ବ୍ୟବହାର ରଖିବାକୁ ଶିକ୍ଷା କରିବା ଉଚିତ।

## ସୀତା-ପରିତ୍ୟାଗ

ଏକ ସମୟରେ ଭଗବାନ୍ ଶ୍ରୀରାମ ଗୁପ୍ତଚରଙ୍କ ଦ୍ୱାରା ସୀତାଙ୍କ ସମ୍ବନ୍ଧରେ ଲୋକାପବାଦ ଶୁଣି ବହୁତ ଶୋକ କରି ଲକ୍ଷ୍ମଣଙ୍କୁ କହିଲେ– 'ଭାଇ ! ମୁଁ ଜାଣିଛି ଯେ ସୀତା ପବିତ୍ର ଓ ଯଶସ୍ୱିନୀ, ଲଙ୍କାରେ ସେ ତୁମ ଆଗରେ ଜ୍ୱଳନ୍ତ ଅଗ୍ନିରେ ପ୍ରବେଶ କରି ନିଜର ପରୀକ୍ଷା ଦେଇଥିଲେ ଏବଂ ସର୍ବଲୋକସାକ୍ଷୀ ଅଗ୍ନିଦେବ ସ୍ୱୟଂ ପ୍ରକଟ ହୋଇ ସମସ୍ତ ଦେବତା ଓ ଋଷିଙ୍କ ଆଗରେ ସୀତାଙ୍କୁ ପାପରହିତ ଭାବେ ଘୋଷଣା କରିଥିଲେ ତଥାପି ଏଇ ଲୋକାପବାଦ କାରଣରୁ ମୁଁ ସୀତାଙ୍କୁ ତ୍ୟାଗ କରିବା ପାଇଁ ସ୍ଥିର କରିଛି। ଏଣୁ ତୁମେ କାଲି ପ୍ରାତଃକାଳରେ ସୁମନ୍ତ ସାରଥିର ରଥରେ ବସାଇ ସୀତାଙ୍କୁ ଗଙ୍ଗା ଆର ପାରିରେ ତମସା ନଦୀ ତୀରରେ ମହାତ୍ମା ବାଲ୍ମୀକିଙ୍କର ଆଶ୍ରମ ନିକଟରେ ନିର୍ଜନ ବଣରେ ଛାଡ଼ି ଦେଇ ଆସ। ତୁମକୁ ମୋର ଚରଣ ଓ ଜୀବନର ଶପଥ ଯେ ଏଇ ବିଷୟରେ ତୁମେ ମୋତେ କିଛି ମଧ୍ୟ କହିବ ନାହିଁ। ସୀତାଙ୍କୁ ମଧ୍ୟ ଏବେ କିଛି କହିବ ନାହିଁ।' ଲକ୍ଷ୍ମଣ ଦୁଃଖଭରା ହୃଦୟରେ ମୌନ ହୋଇ ଆଜ୍ଞା ସ୍ୱୀକାର କଲେ ଏବଂ ସକାଳେ ସୁମନ୍ତକୁ କହି ରଥ ସଜ କରାଇଲେ।

ସୀତାଦେବୀ ଥରେ ମୁନିମାନଙ୍କ ଆଶ୍ରମକୁ ଯିବା ପାଇଁ ପ୍ରାର୍ଥନା କରିଥିଲେ, ଅତଏବ ଲକ୍ଷ୍ମଣଙ୍କ ଦ୍ୱାରା ବଣକୁ ଯିବା କଥା ଶୁଣି ସୀତାଦେବୀ ଏପରି ବୁଝିଲେ ଯେ ସ୍ୱାମୀ ଋଷିମାନଙ୍କର ଆଶ୍ରମକୁ ଯିବା ପାଇଁ ଆଜ୍ଞା ଦେଉଛନ୍ତି; ଏଣୁ ସେ ଋଷିପତ୍ନୀମାନଙ୍କୁ ବାଣ୍ଟିବା ପାଇଁ ବହୁମୂଲ୍ୟ ଅଳଙ୍କାର-ବସ୍ତ୍ର ଏବଂ ବିବିଧ ପ୍ରକାର ବସ୍ତୁ ନେଇ ବଣକୁ ବିଦା ହେଲେ। ବାଟରେ ଅମଙ୍ଗଳ ସୂଚନା ଦେଖି ସୀତା ଲକ୍ଷ୍ମଣଙ୍କୁ ପଚ୍ଚରିଲେ–'ଭାଇ! ନଗରରେ ଓ ଘରେ ସମସ୍ତେ ପ୍ରସନ୍ନ ତ?' ଲକ୍ଷ୍ମଣ କହିଲେ–'ସବୁ କୁଶଳ'।

ଏପର୍ଯ୍ୟନ୍ତ ଲକ୍ଷ୍ମଣ ସହିଥିଲେ, ପରନ୍ତୁ ଗଙ୍ଗା ତୀରରେ ପହଞ୍ଚିବା ମାତ୍ରେ ମର୍ମବେଦନାରେ ଲକ୍ଷ୍ମଣଙ୍କ ହୃଦୟ ଭରିଗଲା ଏବଂ ସେ ଅସହାୟ ଭଳି କଇଁ କଇଁ କାନ୍ଦିବାକୁ ଲାଗିଲେ । ସଂଯମଶୀଳ ଧର୍ମଜ୍ଞ ଲକ୍ଷ୍ମଣଙ୍କୁ କାନ୍ଦିବାର ଦେଖି ସୀତା କହିଲେ–'ଭାଇ! ତୁମେ କାନ୍ଦୁଛ କାହିଁକି? ଆମେ ଗଙ୍ଗାକୂଳରେ ଋଷିମାନଙ୍କର ଆଶ୍ରମ ନିକଟକୁ ଆସିଗଲେଣି, ଏବେ ତ ଆନନ୍ଦିତ ହେବା ଉଚିତ, ତୁମେ ଓଲଟି ଦୁଃଖ କରୁଛ କାହିଁକି? ତୁମେ ତ ରାତି-ଦିନ ଶ୍ରୀରାମଚନ୍ଦ୍ରଙ୍କ ପାଖରେ ରହୁଛ, କ'ଣ ଦୁଇ ରାତି ବିୟୋଗ ପାଇଁ ଶୋକ କରୁଛ? ହେ ପୁରୁଷଶ୍ରେଷ୍ଠ! ମୋତେ ମଧ୍ୟ ଶ୍ରୀରାମ ପ୍ରାଣାଧିକ ପ୍ରିୟ, କିନ୍ତୁ ମୁଁ ଶୋକ କରୁନାହିଁ, ଏହି ପିଲାଳିଆ କଥା ଛାଡ଼ ଏବଂ ଗଙ୍ଗା ଆର ପଟକୁ ଯାଇ ମୋତେ ତପସ୍ୱୀମାନଙ୍କୁ ଦର୍ଶନ କରାଇଦିଅ । ମହାତ୍ମାମାନଙ୍କୁ ଭିନ୍ନ ଭିନ୍ନ ବସ୍ତୁ ବାଣ୍ଟି ଦେଇ ଓ ଯଥାଯୋଗ୍ୟ ସେମାନଙ୍କ ପୂଜା କରି ଗୋଟିଏ ରାତି ରହି ଆମେ ଫେରିଯିବା । ମୋର ମନ ମଧ୍ୟ କମଳନେତ୍ର, ସିଂହସଦୃଶ ବକ୍ଷଃସ୍ଥଳଯୁକ୍ତ, ଆନନ୍ଦଦାତାଙ୍କ ମଧ୍ୟରେ ଶ୍ରେଷ୍ଠ ଶ୍ରୀରାମଙ୍କୁ ଦେଖିବା ପାଇଁ ଉଛନ ହେଉଛି ।'

ଲକ୍ଷ୍ମଣ ଏହି କଥାର କିଛି ଉତ୍ତର ଦେଇ ନ ଥିଲେ ଏବଂ ସୀତାଙ୍କ ସଙ୍ଗେ ନୌକାରେ ଚଢ଼ି ଗଙ୍ଗା ଆର ତଟରେ ପହଞ୍ଚି ପୁଣି ଉଚ୍ଚ ସ୍ୱରରେ କାନ୍ଦିବାକୁ ଆରମ୍ଭ କରିଦେଲେ । ସୀତାଦେବୀ ବାରମ୍ବାର ପଚାରିବା ପରେ ଓ ଆଜ୍ଞାଦେବା ପରେ ଲକ୍ଷ୍ମଣ ତଳକୁ ମୁହଁ କରି ଗଦ୍‌ଗଦ ବାଣୀରେ ଲୋକାପବାଦ ପ୍ରସଙ୍ଗ ବର୍ଣ୍ଣନା କରି କହିଲେ–'ହେ ଦେବି! ଆପଣ ନିର୍ଦ୍ଦୋଷ, କିନ୍ତୁ ଶ୍ରୀରାମ ଆପଣଙ୍କୁ ତ୍ୟାଗ କରି ଦେଇଛନ୍ତି । ଏବେ ଆପଣ ଶ୍ରୀରାମଙ୍କୁ ହୃଦୟରେ ଧାରଣ କରି ପାତିବ୍ରତ୍ୟ ଧର୍ମ ପାଳନ କରି ବାଲ୍ମୀକି ମୁନିଙ୍କର ଆଶ୍ରମରେ ରୁହନ୍ତୁ ।

ଲକ୍ଷ୍ମଣଙ୍କର ଏହି ଦାରୁଣ ବଚନ ଶୁଣିବାମାତ୍ରେ ସୀତା ମୂର୍ଚ୍ଛିତପ୍ରାୟ ହୋଇ ପଡ଼ିଗଲେ । ଟିକିଏ ଚେତା ଆସିବା ପରେ କାନ୍ଦିବାକୁ ଲାଗିଲେ ଏବଂ କହିଲେ–'ହେ ଲକ୍ଷ୍ମଣ! ବିଧାତା ମୋର ଶରୀରକୁ ଦୁଃଖ ଭୋଗ କରିବା ପାଇଁ ସୃଷ୍ଟି କରିଛନ୍ତି । ଜଣା ନାହିଁ, ମୁଁ କେତେ ଦମ୍ପତିଙ୍କର

ବିୟୋଗ କରାଇ ଦେଇଥିଲି, ଯଦ୍ଦ୍ୱାରା ଆଜି ଶୁଦ୍ଧ ଆଚରଣଯୁକ୍ତ ସତୀ ହେଲେ ମଧ୍ୟ ଧର୍ମାତ୍ମା ପ୍ରିୟ ପତି ଶ୍ରୀରାମଙ୍କ ଦ୍ୱାରା ମୋତେ ତ୍ୟାଗ କରି ଦିଆଯାଇଛି । ହେ ଲକ୍ଷ୍ମଣ! ପୂର୍ବକାଳରେ ମୁଁ ବଣରେ ଥିବାବେଳେ ସ୍ୱାମୀସେବାର ସୌଭାଗ୍ୟ ମିଳିବା କାରଣରୁ ବଣର ଦୁଃଖକୁ ସୁଖ ପରି ମଣୁଥିଲି, ପରନ୍ତୁ ହେ ସୌମ୍ୟ! ବର୍ତ୍ତମାନ ପ୍ରିୟତମଙ୍କ ବିୟୋଗରେ ମୁଁ ଆଶ୍ରମରେ କିପରି ରହି ପାରିବି? ଜନ୍ମଦୁଃଖିନୀ ମୁଁ ନିଜର ଦୁଃଖ କାହାକୁ ଜଣାଇବି? ହେ ପ୍ରଭୋ! ମହାତ୍ମା, ଋଷି, ମୁନି ମୋତେ ପଚାରିବେ ଯେ ରଘୁନାଥ ତୁମକୁ କାହିଁକି ତ୍ୟାଗ କରିଦେଲେ, କ'ଣ ତୁମେ କିଛି ମନ୍ଦ କାମ କରିଥିଲ? ମୁଁ ଏହାର କି ଉତ୍ତର ଦେବି? ହେ ସୌମିତ୍ରେ! ମୁଁ ଆଜି ଏହି ଭାଗୀରଥୀରେ ବୁଡ଼ି ନିଜର ପ୍ରାଣ ହରାଇ ଦେବି, ପରନ୍ତୁ ମୋ ଭିତରେ ଶ୍ରୀରାମଙ୍କ ବଂଶବୀଜ ଅଛି । ଯଦି ମୁଁ ବୁଡ଼ି ମରିଯିବି ତେବେ ମୋର ସ୍ୱାମୀଙ୍କ ବଂଶ ନାଶ ହୋଇଯିବ । ଏଣୁ ମୁଁ ମରି ବି ପାରୁ ନାହିଁ । ହେ ଲକ୍ଷ୍ମଣ! ତୁମକୁ ରାଜାଜ୍ଞା ହୋଇଛି, ତୁମେ ମୋ ପରି ଏଇ ଅଭାଗିନୀକୁ ଏଇଠି ଛାଡ଼ି ଚାଲିଯାଅ; ପରନ୍ତୁ ମୋର କିଛି କଥା ଶ୍ରବଣ କରି ଯାଅ ।

'ମୋ ପକ୍ଷରୁ ମୋର ସମସ୍ତ ଶାଶୁମାନଙ୍କୁ ହାତଯୋଡ଼ି ଚରଣ ବନ୍ଦନା କରିବ ଓ ପୁଣି ମହାରାଜାଙ୍କୁ ମୋର ପ୍ରଣାମ କହି କୁଶଳ ପଚାରିବ । ହେ ଲକ୍ଷ୍ମଣ! ସମସ୍ତଙ୍କ ଆଗରେ ମୁଣ୍ଡ ନୁଆଁଇ ମୋର ପ୍ରଣାମ କହିବ ଏବଂ ଧର୍ମରେ ସଦା ସାବଧାନ ରହୁଥିବା ମହାରାଜାଙ୍କୁ ମୋ ତରଫରୁ ଏଇ ନିବେଦନ କରିବ—

**ଜାନାସି ଚ ଯଥା ଶୁଦ୍ଧା ସୀତା ତତ୍ତ୍ୱେନ ରାଘବ ।**
**ଭକ୍ତ୍ୟା ଚ ପରୟା ଯୁକ୍ତା ହିତା ଚ ତବ ନିତ୍ୟଶଃ ॥**
**ଅହଂ ତ୍ୟକ୍ତା ଚ ତେ ବୀର ଅଯଶୋଭୀରୁଣା ଜନେ ।**
**ଯଚ୍ଚ ତେ ବଚନୀୟଂ ସ୍ୟାଦପବାଦଃ ସମୁତ୍ଥିତଃ ॥**
**ମୟା ଚ ପରିହର୍ତ୍ତବ୍ୟଂ ତ୍ୱଂ ହି ମେ ପରମା ଗତିଃ ।**
**ବକ୍ତବ୍ୟଶ୍ଚୈବ ନୃପତିର୍ଧର୍ମେଣ ସୁସମାହିତଃ ॥**

ଯଥା ଭ୍ରାତୃଷୁ ବର୍ତେଥାସ୍ତଥା ପୌରେଷୁ ନିତ୍ୟଦା ।
ପରମୋ ହ୍ୟେଷ ଧର୍ମସ୍ତେ ତସ୍ମାତ୍ କୀର୍ତିରନୁତ୍ତମା ॥
ଯତ୍ତୁ ପୌରଜନେ ରାଜନ୍ ଧର୍ମେଣ ସମବାପ୍ନୁୟାତ୍ ।
ଅହଂ ତୁ ନାନୁଶୋଚାମି ସ୍ୱଶରୀରଂ ନରର୍ଷଭ ॥
ଯଥାପବାଦଂ ପୌରାଣାଂ ତଥୈବ ରଘୁନନ୍ଦନ ।
ପତିର୍ହି ଦେବତା ନାର୍ଯାଃ ପତିର୍ବନ୍ଧୁଃ ପତିର୍ଗୁରୁଃ ॥
ପ୍ରାଣୈରପି ପ୍ରିୟଂ ତସ୍ମାଦ୍ ଭର୍ତୁଃ କାର୍ଯଂ ବିଶେଷତଃ ।

(ବା. ରା. ୭।୪୮।୧୨-୧୮)

'ହେ ରାଘବ! ଆପଣ ଯେଉଁ ପ୍ରକାର ମୋତେ ତତ୍ତ୍ୱଦ୍ୱାରା ଶୁଦ୍ଧ ବୁଝନ୍ତି, ସେହି ପ୍ରକାର ନିତ୍ୟ ନିଜଠାରେ ଭକ୍ତିଯୁକ୍ତ ଓ ଅନୁରକ୍ତ ଚିତ୍ତଯୁକ୍ତ ବୋଲି ମଧ୍ୟ ମଣିବେ । ହେ ବୀର! ମୁଁ ଜାଣିଛି ଯେ ଆପଣ ଲୋକାପବାଦକୁ ଦୂର କରିବା ଏବଂ ନିଜ କୁଳର କୀର୍ତ୍ତି ସୁରକ୍ଷା ନିମିତ୍ତ ମୋତେ ତ୍ୟାଗ କରି ଦେଇଛନ୍ତି, ପରନ୍ତୁ ଆପଣ ହିଁ ମୋର ପରମଗତି । ହେ ମହାରାଜ! ଆପଣ ଯେପରି ଆପଣଙ୍କ ଭାଇମାନଙ୍କ ସହ ବ୍ୟବହାର କରନ୍ତି, ପ୍ରଜାଙ୍କ ସହିତ ସେପରି ବ୍ୟବହାର କରିବେ । ହେ ରାଘବ! ଏହା ଆପଣଙ୍କର ପରମ ଧର୍ମ ଏବଂ ଏହା ଦ୍ୱାରା ଉତ୍ତମ କୀର୍ତି ମିଳେ । ହେ ସ୍ୱାମିନ୍! ପ୍ରଜାଙ୍କ ଉପରେ ଧର୍ମଯୁକ୍ତ ଶାସନ କଲେ ପୁଣ୍ୟ ହୁଏ । ଅତଏବ ଏପରି କୌଣସି କାର୍ଯ୍ୟ କରିବେ ନାହିଁ ଯଦ୍ଦ୍ୱାରା ପ୍ରଜାମାନଙ୍କଠାରେ ଅପବାଦ ହେବ । ହେ ରଘୁନନ୍ଦନ! ମୋତେ ମୋ ଶରୀର ପାଇଁ ଟିକିଏ ହେଲେ ଶୋକ ନାହିଁ । କାରଣ ଜଣେ ସ୍ତ୍ରୀ ପକ୍ଷରେ ସ୍ୱାମୀ ହିଁ ପରମ ଦେବତା । ପତି ହିଁ ପରମ ବନ୍ଧୁ ଏବଂ ପରମ ଗୁରୁ । ନିତ୍ୟ ପ୍ରାଣାଧିକ ପ୍ରିୟ ପତିଙ୍କର ପ୍ରିୟ କାର୍ଯ୍ୟ କରିବା ଏବଂ ସେଥିରେ ପ୍ରସନ୍ନ ରହିବା ସ୍ତ୍ରୀର ସ୍ୱାଭାବିକ ଧର୍ମ ଅଟେ ।' କି ମାର୍ମିକ ଶବ୍ଦ! ଧନ୍ୟ ସତୀ ସୀତା, ଧନ୍ୟ ଧର୍ମପ୍ରେମ ଓ ପ୍ରଜାବତ୍ସଳତା । ଧନ୍ୟ ଭାରତର ସତୀ ଧର୍ମ!! ଧନ୍ୟ ଭାରତୀୟ ଦେବୀମାନଙ୍କର ଅପୂର୍ବ ତ୍ୟାଗ!!!

ସୀତାଦେବୀ କହିଲେ–'ହେ ଲକ୍ଷ୍ମଣ! ମୋର ଏହି ସନ୍ଦେଶ

ମହାରାଜାଙ୍କୁ କହିଦେବ । ଭାଇ! ଆଉ ଗୋଟିଏ କଥା, ମୁଁ ଏଇ ସମୟରେ ଗର୍ଭବତୀ, ତୁମେ ମୋତେ ଦେଖି ଏହି କଥା ନିଶ୍ଚୟ କରି ଯାଅ, ସଂସାରର ଲୋକମାନେ ଏଇ ଅପବାଦ ଯେପରି ନ କରନ୍ତି ଯେ ସୀତା ବଣକୁ ଯାଇ ସନ୍ତାନ ପ୍ରସବ କରିଛନ୍ତି ।'

ସୀତାଙ୍କର ଏଇ ବଚନକୁ ଶୁଣି ଦୀନଚିତ୍ତ ଲକ୍ଷ୍ମଣ ବ୍ୟାକୁଳ ହୋଇ ଉଠିଲେ ଏବଂ ମୁଣ୍ଡ ନୁଆଁଇ ସୀତାଙ୍କ ପାଦରେ ପଡ଼ି ଦୀର୍ଘ ଶ୍ୱାସ ପକାଇ ଜୋର୍ ଜୋର୍‌ରେ କାନ୍ଦିବାକୁ ଲାଗିଲେ । ପୁଣି ଉଠି ସୀତାଙ୍କୁ ପ୍ରଦକ୍ଷିଣ କଲେ ଏବଂ ଦୁଇଘଡ଼ି ପର୍ଯ୍ୟନ୍ତ ଧ୍ୟାନ କରିବା ପରେ କହିଲେ– 'ମାତା! ହେ ନିଷ୍ପାପ ପତିବ୍ରତେ! ଆପଣ ଇଏ କ'ଣ କହୁଛନ୍ତି? ମୁଁ ଆଜି ପର୍ଯ୍ୟନ୍ତ କେବଳ ଆପଣଙ୍କ ଚରଣକୁ ହିଁ ଦର୍ଶନ କରିଛି, କେବେ ସ୍ୱରୂପ ଦେଖି ନାହିଁ । ଆଜି ଭଗବାନ୍ ରାମଙ୍କ ପରୋକ୍ଷରେ ମୁଁ ଆପଣଙ୍କୁ କିପରି ଦେଖି ପାରିବି?' ତାହାପରେ ପ୍ରଣାମ କରି ସେ କାନ୍ଦି କାନ୍ଦି ନାବ ଉପରେ ଚଢ଼ି ଲେଉଟି ଆସିଲେ ଏବଂ ଏଣେ ସୀତା–ଦୁଃଖଭାରରେ ପୀଡ଼ିତା ଆଦର୍ଶ ପତିବ୍ରତା ସତୀ ସୀତା–ଅରଣ୍ୟରେ ଗଳା ଫଟାଇ କ୍ରନ୍ଦନ କରିବାକୁ ଲାଗିଲେ । ସୀତାଙ୍କ ରୋଦନ ଶୁଣି ବାଲ୍ମୀକି ମହର୍ଷି ତାଙ୍କୁ ନିଜ ଆଶ୍ରମକୁ ନେଇଗଲେ ।

ଏଇ ପ୍ରସଙ୍ଗରେ ଯାହା କିଛି ଶିକ୍ଷା କରାଯାଏ, ତାହାହିଁ ଭାରତୀୟ ଦେବୀମାନଙ୍କର ପରମ ଧର୍ମ । ସୀତାଙ୍କର ଉପରୋକ୍ତ ଶବ୍ଦଗୁଡ଼ିକୁ ନିତ୍ୟ ପାଠ କରିବା ଉଚିତ ଏବଂ ସେଗୁଡ଼ିକର ରହସ୍ୟକୁ ନିଜ ଜୀବନରେ ଅବତାରଣ କରିବା ଉଚିତ । ଲକ୍ଷ୍ମଣଙ୍କ ବ୍ୟବହାରରୁ ଆମେ ଏହି ଶିକ୍ଷା ଗ୍ରହଣ କରିବା ଉଚିତ ଯେ ପଦରେ ମାତା ସମାନ ହେଲେ ମଧ୍ୟ ପୁରୁଷ କୌଣସି ସ୍ତ୍ରୀର ଅଙ୍ଗ ଦେଖିବା ଉଚିତ ନୁହେଁ । ଏଇ ପ୍ରକାରେ ସ୍ତ୍ରୀ ମଧ୍ୟ ନିଜର ଅଙ୍ଗ କାହାରିକୁ ଦେଖାଇବେ ନାହିଁ । ବାଲ୍ମୀକିଙ୍କ ଆଶ୍ରମରେ ସୀତା ଋଷିଙ୍କ ଆଜ୍ଞାରେ ଅନ୍ତଃପୁରରେ ଋଷିପତ୍ନୀଙ୍କ ପାଖରେ ରହିଲେ, ଏଥିରୁ ଏହା ଶିଖିବା ଉଚିତ ଯେ ଯଦି କେବେ ଅନ୍ୟ ଲୋକର ଘରେ ରହିବାର ଅବସର ଆସେ ତେବେ ସ୍ତ୍ରୀମାନେ ଅନ୍ତଃପୁରରେ ରହିବା ଉଚିତ ଏବଂ

ଏଇ ପ୍ରକାରେ କୌଣସି ଅନ୍ୟ ସ୍ତ୍ରୀକୁ ନିଜର ଘରେ ରଖିଲେ ସ୍ତ୍ରୀଙ୍କ ସହିତ ଅନ୍ତଃପୁରରେ ରଖାଇବା ଉଚିତ।

## ପାତାଲ-ପ୍ରବେଶ

ଯେଉଁ ସ୍ତ୍ରୀ ନିଜର ଧର୍ମ ପ୍ରାଣପଣେ ପାଳନ କରେ, ଶେଷରେ ତାହାର ପରିଣାମ ଭଲ ହିଁ ହୁଏ। ଭଗବାନ୍ ଶ୍ରୀରାମଚନ୍ଦ୍ର ଅଶ୍ୱମେଧ ଯଜ୍ଞ କରିବା ବେଳେ ଏବଂ ଲବ କୁଶଙ୍କ ଦ୍ୱାରା ରାମାୟଣ ଗାନ ଶୁଣି ମୁଗ୍ଧ ହେବା ବେଳେ ଲବ କୁଶଙ୍କ ସହିତ ପରିଚୟ ହେଲା ଏବଂ ଶ୍ରୀରାମଙ୍କ ଆଜ୍ଞାରେ ସୀତାଙ୍କୁ ଡକାଇ ଅଣାଗଲା। ସୀତା ଶ୍ରୀରାମଙ୍କୁ ଧ୍ୟାନ କରି ମସ୍ତକ ନତ କରି ହାତ ଯୋଡ଼ି ବାଲ୍ମୀକି ଋଷିଙ୍କ ପଛେ ପଛେ କାନ୍ଦି କାନ୍ଦି ଆସୁଥିଲେ। ବାଲ୍ମୀକି ମୁନି ସଭାକୁ ଆସି ଯାହା କିଛି କହିଲେ ସେଥିରେ ସାରା ଲୋକାପବାଦ ଗ୍ଳି ଯାଇଥିଲା ଏବଂ ସାରା ଦେଶ ସୀତା ରାମଙ୍କ ଜୟ ଜୟକାର ଧ୍ୱନିରେ କମ୍ପି ଉଠିଥିଲା। ବାଲ୍ମୀକି ମହର୍ଷି ସୀତାଙ୍କର ନିଷ୍ପାପ ହେବା କଥା କହିବାକୁ ଯାଇଁ ଏପରି କହିଲେ ଯେ 'ମୁଁ ହଜାର ହଜାର ବର୍ଷେ ତପସ୍ୟା କରିଛି, ମୁଁ ସେହି ତପର ଶପଥ ନେଇ କହୁଛି ଯଦି ସୀତା ଦୁଷ୍ଟ ଆଚରଣଯୁକ୍ତା ହୋଇଥିବେ, ତେବେ ମୋ ତପର ସାରା ଫଳ ନଷ୍ଟ ହୋଇଯିବ। ମୁଁ ମୋର ଦିବ୍ୟ ଦୃଷ୍ଟି ଓ ଜ୍ଞାନଦୃଷ୍ଟି ଦ୍ୱାରା ବିଶ୍ୱାସ ଦେଉଛି ଯେ ସୀତା ପରମ ଶୁଦ୍ଧା ଅଟନ୍ତି।' ବାଲ୍ମୀକିଙ୍କ ପ୍ରତିଜ୍ଞା ଶୁଣି ଏବଂ ସୀତାଙ୍କୁ ସଭାକୁ ଆସିବାର ଦେଖି ଭଗବାନ୍ ଶ୍ରୀରାମ ଗଦ୍‌ଗଦ ହୋଇଗଲେ ଏବଂ କହିବାକୁ ଲାଗିଲେ ଯେ 'ହେ ମହାଭାଗ! ମୁଁ ଜାଣିଛି ଯେ ଜାନକୀ ଶୁଦ୍ଧା, ଲବ କୁଶ ମୋରି ପୁତ୍ର, ମୁଁ ରାଜଧର୍ମ ପାଳନ ପାଇଁ ପ୍ରିୟା ସୀତାଙ୍କୁ ତ୍ୟାଗ କରିବାକୁ ବାଧ୍ୟ ହୋଇଥିଲି। ଅତଏବ ଆପଣ ମୋତେ କ୍ଷମା କରନ୍ତୁ।'

ସେହି ସଭାରେ ବ୍ରହ୍ମା, ଆଦିତ୍ୟ, ବସୁ, ରୁଦ୍ର, ବିଶ୍ୱେଦେବ, ବାୟୁ, ସାଧ୍ୟ, ମହର୍ଷି, ନାଗ, ସୁପର୍ଣ୍ଣ ଓ ସିଦ୍ଧ ଆଦି ବସିଥିଲେ। ସେହି ସମସ୍ତଙ୍କ ସମକ୍ଷରେ ଶ୍ରୀରାମ ପୁଣି ଏହା କହିଲେ ଯେ, 'ଏଇ ଜଗତରେ ବୈଦେହୀ

ଶୁଦ୍ଧା ଏବଂ ଏହାଙ୍କ ଉପରେ ମୋର ପୂର୍ଣ୍ଣ ପ୍ରେମ ଅଛି'–

**ଶୁଦ୍ଧାୟାଂ ଜଗତୋ ମଧ୍ୟେ ବୈଦେହ୍ୟାଂ ପ୍ରୀତିରସ୍ତୁ ମେ ॥**

(ବା. ରା. ୭ ।୯୭ ।୫)

ଏତିକିରେ କଷାୟବସ୍ତ୍ର ଧାରଣ କରିଥିବା ସତୀ ସୀତା ତଳକୁ ବେକ କରି ଶ୍ରୀରାମଙ୍କୁ ଧ୍ୟାନ କରି ଭୂମିକୁ ଦେଖିବାକୁ ଲାଗିଲେ ଏବଂ କହିଲେ–

**ଯଥାହଂ ରାଘବାଦନ୍ୟଂ ମନସାପି ନ ଚିନ୍ତୟେ ।**
**ତଥା ମେ ମାଧବୀ ଦେବୀ ବିବରଂ ଦାତୁମର୍ହତି ॥**
**ମନସା କର୍ମଣା ବାଚା ଯଥା ରାମଂ ସମର୍ଚୟେ ।**
**ତଥା ମେ ମାଧବୀ ଦେବୀ ବିବରଂ ଦାତୁମର୍ହତି ॥**
**ଯଥୈତତ୍ସତ୍ୟମୁକ୍ତଂ ମେ ବେଦ୍ମି ରାମାତ୍ପରଂ ନ ଚ ।**
**ତଥା ମେ ମାଧବୀ ଦେବୀ ବିବରଂ ଦାତୁମର୍ହତି ॥**

(ବା. ରା. ୭ ।୯୭ ।୧୪-୧୬)

ଯଦି ମୁଁ ରାମଙ୍କୁ ଛାଡ଼ି କୌଣସି ଅନ୍ୟକୁ କେବେ ମନରେ ମଧ୍ୟ ଚିନ୍ତା କରି ନ ଥିବି ତେବେ ହେ ମାଧବୀ ଦେବି! ତୁମେ ମୋତେ କୋଳକୁ ନେଇନିଅ; ହେ ପୃଥିବୀ ମାତା! ମୋତେ ମାର୍ଗ ଦିଅ । ଯଦି ମୁଁ ମନ, କର୍ମ ଓ ବାଣୀରେ କେବଳ ଶ୍ରୀରାମଙ୍କର ପୂଜନ କରିଥିବି ତେବେ ହେ ମାଧବୀ ଦେବି! ମୋତେ କୋଳକୁ ନେଇଯାଅ । ହେ ପୃଥିବୀ ମାତା! ମୋତେ ମାର୍ଗ ଦିଅ । ଯଦି ମୁଁ ଶ୍ରୀରାମଙ୍କ ବ୍ୟତୀତ ଆଉ କାହାରିକୁ ଜାଣି ନ ଥିବି ଅର୍ଥାତ୍ କେବଳ ଶ୍ରୀରାମଙ୍କୁ ହିଁ ଭଜନ କରୁଥିବି ଏବଂ ଏହା ସତ୍ୟ ଅଟେ, ତେବେ ହେ ମାଧବୀ ଦେବି! ମୋତେ ମାର୍ଗ ଦିଅ ।

ଏହି ତିନି ଶପଥ କରିବା ପରେ ଅକସ୍ମାତ୍ ପୃଥ୍ୱୀ ଫାଟିଗଲା, ସେଥିରୁ ଗୋଟିଏ ଉତ୍ତମ ଦିବ୍ୟ ସିଂହାସନ ବାହାରିଲା, ଦିବ୍ୟ ସିଂହାସନକୁ ଦିବ୍ୟ ଦେହ ଓ ଦିବ୍ୟ ବସ୍ତ୍ର ଭୂଷଣଧାରୀ ନାଗମାନେ ନିଜର ମସ୍ତକ ଉପରେ ଉଠାଇ ରଖିଥିଲେ ଏବଂ ତା ଉପରେ ପୃଥ୍ୱୀ ଦେବୀ ବସିଥିଲେ । ପୃଥ୍ୱୀ ଦେବୀ ଦୁଇହାତରେ ସୀତାଙ୍କୁ ଆଲିଙ୍ଗନ କଲେ ଏବଂ 'ହେ ପୁତ୍ରୀ!

ତୋର କଲ୍ୟାଣ ହେଉ' କହି କୋଳରେ ବସାଇ ଦେଲେ। ଏତିକିରେ ସମସ୍ତେ ଦେଖୁ ଦେଖୁ ସିଂହାସନ ରସାତଳରେ ପ୍ରବେଶ କରିଗଲା। ସତୀ ସୀତାଙ୍କର ଜୟ ଜୟକାରରେ ତ୍ରିଭୁବନ ଭରିଗଲା।

## ସୀତା-ପରିତ୍ୟାଗର କାରଣ

ଏଠାରେ ପ୍ରଶ୍ନ ହୁଏ ଯେ 'ଭଗବାନ୍ ଶ୍ରୀରାମ ବଡ଼ ଦୟାଳୁ ଏବଂ ନ୍ୟାୟବାହୀ ଥିଲେ, ସେ ନିର୍ଦ୍ଦୋଷ ଜାଣି ମଧ୍ୟ ସୀତାଙ୍କୁ ତ୍ୟାଗ କରିଦେଲେ କାହିଁକି? ଏଥିରେ ପ୍ରଧାନତଃ ନିମ୍ନଲିଖିତ ପାଞ୍ଚଟି କାରଣ ଅଛି, ଏଇ କାରଣମାନଙ୍କ ଉପରେ ଧ୍ୟାନ ଦେଲେ ଏହା ସିଦ୍ଧ ହୋଇଯିବ ଯେ ଶ୍ରୀରାମଙ୍କର ଏଇ କାର୍ଯ୍ୟ ସର୍ବଥା ଉଚିତ ଥିଲା—

୧— ଶ୍ରୀରାମଙ୍କ ନିକଟକୁ ଏଇ ପ୍ରକାର କଥା ଆସିଥିଲା—

**ଅସ୍ମାକମପି ଦାରେଷୁ ସହନୀୟଂ ଭବିଷ୍ୟତି ।**
**ଯଥା ହି କୁରୁତେ ରାଜା ପ୍ରଜା ତମନୁବର୍ତତେ ॥**

(ବା. ରା. ୭।୪୩।୧୯)

—'ରାମ ରାବଣ ଘରେ ରହି ଆସିଥିବା ସୀତାକୁ ଘରେ ରଖିଦେଲେ, ଏଣୁ ଏବେ ଆମ ସ୍ତ୍ରୀ ଯଦି ଅନ୍ୟ ଘରେ ରହି ଆସିବ, ତେବେ ଆମେ ମଧ୍ୟ ସେଇ କଥା ସହିଯିବୁ, କାରଣ ରାଜା ଯାହା କିଛି କରନ୍ତି ପ୍ରଜାମାନେ ତାର ଅନୁସରଣ କରନ୍ତି।' ପ୍ରଜାମାନଙ୍କର ଏଇ ଭାବନାରୁ ଭଗବାନ୍ ଏହା ଚିନ୍ତା କଲେ ଯେ ସୀତା ନିର୍ଦ୍ଦୋଷ ହେବା କେବଳ ମୋରି ବୁଦ୍ଧିରେ। ସାଧାରଣ ଲୋକ ଏକଥା ଜାଣନ୍ତି ନାହିଁ। ସେମାନେ ତ ଏଥିରୁ ଏହି ଶିକ୍ଷା ନେବେ ଯେ ପରପୁରୁଷ ଘରେ ବିନା ବାଧାରେ ସ୍ତ୍ରୀ ରହିପାରେ, ଏପରି ହେଲେ ସ୍ତ୍ରୀଧର୍ମ ସମ୍ପୂର୍ଣ୍ଣତଃ ବିଗିଡ଼ି ଯିବ, ପ୍ରଜାମାନଙ୍କ ମଧ୍ୟରେ ବର୍ଣ୍ଣସଂକରତା ବୃଦ୍ଧି ପାଇବ, ଅତଏବ ପ୍ରଜାମାନଙ୍କର ଧର୍ମ ରକ୍ଷା ପାଇଁ ପ୍ରାଣାଧିକା ସୀତାଙ୍କୁ ତ୍ୟାଗ କରି ଦେବା ଉଚିତ। ସୀତାଙ୍କ ତ୍ୟାଗରେ ରାମଙ୍କୁ ବଡ଼ ଦୁଃଖ ହୋଇଥିଲା, ତାଙ୍କର ହୃଦୟ ବିଦୀର୍ଣ୍ଣ ହୋଇ ଯାଇଥିଲା। ତାଙ୍କର ହୃଦୟ ଦଶାର ପୂରା ଅନୁଭବ ତ କରାଯାଇ ପାରିବ ନାହିଁ, କିନ୍ତୁ

ବାଲ୍ମୀକି ରାମାୟଣ ଓ ଉତ୍ତରରାମଚରିତ ପଢ଼ିଲେ କିଞ୍ଚିତ୍ ଦିଗ୍‌ଦର୍ଶନ ହୋଇପାରେ । ଶ୍ରୀରାମ ଏଠାରେ ପ୍ରଜାଧର୍ମ ରକ୍ଷାପାଇଁ ବ୍ୟକ୍ତିଧର୍ମକୁ ବଳିଦାନ କରିଛନ୍ତି । ପ୍ରଜାରଞ୍ଜନ ଯଜ୍ଞାନଳରେ ଆତ୍ମସ୍ୱରୂପା ସୀତାଙ୍କୁ ଆହୁତି ଦେଇ ଦେଇଥିଲେ । ଏଥିରୁ ତାଙ୍କର ପ୍ରଜାପ୍ରେମର କଥା ଜଣାପଡ଼େ । ସୀତା ରାମ ଅଟନ୍ତି ଓ ରାମ ସୀତା ଅଟନ୍ତି, ଶକ୍ତି ଓ ଶକ୍ତିମାନ୍ ମିଳି ହିଁ ଜଗତକୁ ନିୟନ୍ତ୍ରଣ କରନ୍ତି, ଅତଏବ ସୀତାଙ୍କ ତ୍ୟାଗରେ କିଛି ଆପତ୍ତି ନାହିଁ । ଏଇ ଲୋକସଂଗ୍ରହ ହେତୁ ମଧ୍ୟ ସୀତାଙ୍କ ତ୍ୟାଗ ଉଚିତ ଅଟେ ।

୨– ଯଦିଓ ଅଳ୍ପ କିଛି ସଂଖ୍ୟାରେ ସୀତାଙ୍କର ମିଥ୍ୟା ଅପବାଦ କରୁଥିବା ଲୋକ ଥିଲେ, ତଥାପି ଏହି ଅପବାଦ ତ୍ୟାଗ ବିନା ଦୂର ହୋଇ ପାରି ନ ଥାନ୍ତା ଏବଂ ଯଦି ସୀତା ବାଲ୍ମୀକିଙ୍କ ଆଶ୍ରମରେ ରହି ତାଙ୍କ ଦ୍ୱାରା ପ୍ରତିଜ୍ଞା ସହିତ ଶୁଦ୍ଧ ବୋଲି କୁହାଯାଇ ନ ଥାନ୍ତେ ଏବଂ ପୃଥ୍ୱୀଦେବୀ ଯଦି ଗ୍ରହଣ କରି ଦେଇ ନ ଥାନ୍ତେ ତେବେ ଏଇ ଅପବାଦ ଯାଇ ପାରି ନ ଥାନ୍ତା । ବୋଧହୁଏ ଏହା ବୃଦ୍ଧି ପାଇଥାନ୍ତା ଏବଂ ସୀତାଙ୍କ ନାମ ଯେଉଁ ଭାବରେ ଗ୍ରହଣ କରାଯାଉଛି, ତାହା ଫଳପ୍ରଦ ହୋଇ ନ ଥାନ୍ତା । ଏଇ ହେତୁରୁ ସୀତାଙ୍କ ତ୍ୟାଗ ନ୍ୟାୟସଙ୍ଗତ ।

୩– ସୀତା ଶ୍ରୀରାମଙ୍କର ପରମ ଭକ୍ତା ଥିଲେ, ତାଙ୍କ ଆଶ୍ରିତ ଥିଲେ, ତାଙ୍କର ପରମ ପ୍ରିୟ ଅର୍ଦ୍ଧାଙ୍ଗିନୀ ଥିଲେ, ଏପରି ପରମ ପବିତ୍ରା ସୀତାଙ୍କୁ ନିଷ୍ଠୁରତାର ସହିତ ତ୍ୟାଗ କରିଦେବାର ଦୋଷ ଭଗବାନ୍ ଶ୍ରୀରାମ ନିଜ ଉପରକୁ ଏଥିପାଇଁ ଆଣିଥିଲେ ଯେ ଏହାଦ୍ୱାରା ସୀତାଙ୍କର ଗୌରବ ବୃଦ୍ଧି ହେଲା, ସୀତାଙ୍କର ମିଥ୍ୟା କଳଙ୍କ ଧୋଇଗଲା ଏବଂ ସୀତା ଜଗତପୂଜ୍ୟା ହୋଇଗଲେ । ଭଗବାନ୍ ନିଜର ଗୌରବ ବଢ଼ାଇବା ପାଇଁ ନିଜ ଉପରକୁ ଦୋଷ ନେଇ ଆସନ୍ତି ଏବଂ ଏହା ଏଠାରେ ମଧ୍ୟ ହେଲା ।

୪– ଅବତାର ଲୀଳାକାର୍ଯ୍ୟ ପ୍ରାୟଃ ସମାପ୍ତ ହୋଇ ସାରିଥିଲା, ଦେବତାମାନେ ସୀତାଦେବୀଙ୍କୁ ଏଇ କଥାର ସଙ୍କେତ କରିଥିଲେ । ଅଧ୍ୟାତ୍ମରାମାୟଣରେ ଲେଖା ଅଛି 'ଦଶ ହଜାର ବର୍ଷ ପର୍ଯ୍ୟନ୍ତ ମାୟାମନୁଷ୍ୟରୂପଧାରୀ ଭଗବାନ୍ ବିଧିପୂର୍ବକ ରାଜ୍ୟ କରିବେ ଏବଂ ସମସ୍ତେ

ତାଙ୍କର ଚରଣକମଳକୁ ପୂଜା କରିବେ। ଭଗବାନ୍ ଶ୍ରୀରାମ ରାଜର୍ଷି, ପରମ ପବିତ୍ର, ଏକପତ୍ନୀବ୍ରତୀ ଥିଲେ ଏବଂ ଲୋକସଂଗ୍ରହ ପାଇଁ ଗୃହସ୍ଥର ସବୁ ଧର୍ମକୁ ଯଥାବିଧି ପାଳନ କରୁଥିଲେ। ପତିପ୍ରାଣା ସୀତାଦେବୀ ପ୍ରେମ, ଅନୁକୂଳ ଆଚରଣ, ନମ୍ରତା, ଇନ୍ଦ୍ରିୟମାନଙ୍କର ଦମନ, ଲଜ୍ଜା ଓ ପ୍ରତିକୂଳ ଆଚରଣରେ ଭୟ ଆଦି ଗୁଣମାନଙ୍କ ଦ୍ୱାରା ଭଗବାନଙ୍କର ଭାବ ବୁଝି ତାଙ୍କର ମନକୁ ପ୍ରସନ୍ନ କରୁଥିଲେ। ଏକ ସମୟରେ ଶ୍ରୀରାମ ପୁଷ୍ପବାଟିକାରେ ବସିଥିଲେ। ସୀତାଦେବୀ ତାଙ୍କର କୋମଳ ପାଦକୁ ମଞ୍ଚାଳୁଥିଲେ। ସୀତା ଏକାନ୍ତ ଦେଖି ଭଗବାନଙ୍କୁ କହିଲେ– "ହେ ଦେବଦେବ! ଆପଣ ଜଗତର ସ୍ୱାମୀ, ପରମାତ୍ମା, ସନାତନ ସଚ୍ଚିଦାନନ୍ଦଘନ ଏବଂ ଆଦିମଧ୍ୟାନ୍ତରହିତ ତଥା ସମସ୍ତଙ୍କ କାରଣ? ହେ ଦେବ! ସେ ଦିନ ଇନ୍ଦ୍ରାଦି ଦେବତାମାନେ ମୋ ପାଖକୁ ଆସି ସ୍ତୁତି କରି ଏହା କହିଲେ ଯେ 'ହେ ଜଗନ୍ମାତା! ତୁମେ ଭଗବାନଙ୍କ ଚିତ୍-ଶକ୍ତି ଅଟ। ତୁମେ ପ୍ରଥମେ ବୈକୁଣ୍ଠ ଗମନ କରିବା ପାଇଁ କୃପା କର, ତେବେ ଭଗବାନ୍ ରାମ ମଧ୍ୟ ବୈକୁଣ୍ଠ ଯାଇ ଆମ୍ଭମାନଙ୍କୁ ସନାଥ କରିବେ।' ଦେବତାମାନେ ଯାହା କିଛି କହିଥିଲେ ତାହା ମୁଁ ନିବେଦନ କରିଦେଲି। ମୁଁ କୌଣସି ଆଜ୍ଞା ଦେଉ ନାହିଁ, ଆପଣ ଯାହା ଉଚିତ ମନେ କରୁଛନ୍ତି ସେପରି କରନ୍ତୁ।" କ୍ଷଣେକାଳ ଚିନ୍ତା କରି ଭଗବାନ୍ କହିଲେ–

> ଦେବି ଜାନାମି ସକଳଂ ତତ୍ରୋପାୟଂ ବଦାମି ତେ।
> କଳ୍ପୟିତ୍ୱା ମିଷଂ ଦେବି ଲୋକବାଦଂ ତ୍ୱଦାଶ୍ରୟମ୍॥
> ତ୍ୟଜାମି ତ୍ୱାଂ ବନେ ଲୋକବାଦାଭୀତ ଇବାପରଃ।
> ଭବିଷ୍ୟତଃ କୁମାରୌ ଦ୍ୱୌ ବାଲ୍ମୀକେରାଶ୍ରମାନ୍ତିକେ॥
> ଇଦାନୀଂ ଦୃଶ୍ୟତେ ଗର୍ଭଃ ପୁନରାଗତ୍ୟ ମେଽନ୍ତିକମ୍।
> ଲୋକାନାଂ ପ୍ରତ୍ୟୟାର୍ଥଂ ତ୍ୱଂ କୃତ୍ୱା ଶପଥମାଦରାତ୍॥
> ଭୂମେର୍ବିବରମାତ୍ରେଣ ବୈକୁଣ୍ଠଂ ଯାସ୍ୟସି ଦ୍ରୁତମ୍।
> ପଶ୍ଚାଦହଂ ଗମିଷ୍ୟାମି ଏଷ ଏବ ସୁନିଶ୍ଚୟଃ॥
>
> (ଅ. ରା. ୭।୪।୪୧-୪୪)

'ହେ ଦେବି! ମୁଁ ସବୁ ଜାଣିଛି ଏବଂ ତୁମକୁ ଗୋଟିଏ ଉପାୟ ବତାଇ ଦେଉଛି। ହେ ସୀତେ! ମୁଁ ତୁମର ଲୋକାପବାଦ ବାହାନା କରି ସାଧାରଣ ମନୁଷ୍ୟ ପରି ଲୋକାପବାଦ ଭୟରେ ତୁମକୁ ବଣରେ ତ୍ୟାଗ କରିଦେବି। ସେଠାରେ ବାଲ୍ମୀକିଙ୍କ ଆଶ୍ରମରେ ତୁମର ଦୁଇପୁତ୍ର ହେବେ, କାରଣ ବର୍ତ୍ତମାନ ତୁମେ ଗର୍ଭବତୀ ଅଛ। ତାହାପରେ ତୁମେ ମୋ ପାଖକୁ ଆସିବ ଏବଂ ଲୋକଙ୍କୁ ବିଶ୍ୱାସ ଦେବା ପାଇଁ ବଡ଼ ଆଦରରେ ଶପଥ ନେଇ ପୃଥ୍ୱୀ ବିବରରେ ପ୍ରବେଶ କରି ଶୀଘ୍ର ବୈକୁଣ୍ଠକୁ ଚ୍ଳିଯିବ ଏବଂ ପଛେ ପଛେ ମୁଁ ମଧ୍ୟ ଯିବି। ଏହା ନିଶ୍ଚୟ ଅଟେ।' ଏହା ମଧ୍ୟ ସୀତାଙ୍କୁ ତ୍ୟାଗ କରିବାର ହିଁ ଏକ କାରଣ।

୫– ପୂର୍ବକାଳରେ ଏକ ସମୟରେ ଯୁଦ୍ଧରେ ଦେବତାମାନଙ୍କ ଠାରୁ ହାରି ପଳାଇଯାଇ ଦୈତ୍ୟମାନେ ଭୃଗୁଙ୍କର ସ୍ତ୍ରୀଙ୍କ ଆଶ୍ରମକୁ ଚ୍ଳିଗଲେ ଏବଂ ଋଷିପତ୍ନୀଙ୍କ ଠାରୁ ଅଭୟ ପ୍ରାପ୍ତ କରି ନିର୍ଭୟ ହୋଇ ରହିଲେ। ଦୈତ୍ୟମାନଙ୍କୁ ଭୃଗୁପତ୍ନୀ ଆଶ୍ରୟ ଦେଲେ। ଏଇ କଥାରେ ରାଗି ଯାଇ ଭଗବାନ୍ ବିଷ୍ଣୁ ତାଙ୍କ ମସ୍ତକକୁ ଚକ୍ରରେ କାଟିଦେଲେ। ପତ୍ନୀକୁ ଏଇ ପ୍ରକାର ମରିଯିବାର ଦେଖି ଭୃଗୁ ଋଷି କ୍ରୋଧରେ ହତଜ୍ଞାନ ହୋଇ ଭଗବାନଙ୍କୁ ଶାପ ଦେଲେ ଯେ 'ହେ ଜନାର୍ଦ୍ଦନ! ଆପଣ ରାଗି ଯାଇ ମୋର ଅବଧ୍ୟ ପତ୍ନୀକୁ ମାରିଦେଲେ, ଏଣୁ ଆପଣଙ୍କୁ ମନୁଷ୍ୟଲୋକରେ ଜନ୍ମ ନେବାକୁ ପଡ଼ିବ ଏବଂ ଦୀର୍ଘକାଳ ପର୍ଯ୍ୟନ୍ତ ପତ୍ନୀବିୟୋଗ ସହିବାକୁ ପଡ଼ିବ।' ଭଗବାନ୍ ଲୋକହିତ ପାଇଁ ଏ ଶାପକୁ ସ୍ୱୀକାର କଲେ ଏବଂ ସେହି ଶାପକୁ ସତ୍ୟ କରିବା ପାଇଁ ନିଜର ଅଭିନ୍ନ ଶକ୍ତି ସୀତାଙ୍କୁ ଲୀଳାରେ ହିଁ ବଣକୁ ପଠାଇ ଦେଲେ।

ଏହିପରି ଅନେକ କାରଣରୁ ସୀତାଙ୍କ ନିର୍ବାସନ ରାମଙ୍କ ପାଇଁ ଉଚିତ ଥିଲା। ଅସଲ କଥା ହେଲା ଯେ ଭଗବାନ୍ ରାମ ଓ ସୀତା ସାକ୍ଷାତ୍ ନାରାୟଣ ଓ ଶକ୍ତି। ଗୋଟିଏ ମହାନ୍ ତତ୍ତ୍ୱର ଦୁଇଟି ରୂପ। ତାଙ୍କରି ଲୀଳା ସେ ହିଁ ଜାଣନ୍ତି, ଆମ୍ଭମାନଙ୍କର ଆଲୋଚନା କରିବାର

ଅଧିକାର କିଛି ନାହିଁ। ଆମର ଉଚିତ ଯେ ଆମେ ଏଇ ଦିବ୍ୟଲୀଳାରୁ ଲାଭ ଉଠାଇବା ଏବଂ ନିଜର ମନୁଷ୍ୟ ଜୀବନକୁ ପବିତ୍ର କରିବା।

ମାନବଲୀଳାରେ ସୀତାଦେବୀ ଏଇ କଥାକୁ ପ୍ରମାଣିତ କରିଦେଲେ ଯେ ବିନା ଦୋଷରେ ମଧ୍ୟ ଯଦି ସ୍ୱାମୀ ତ୍ୟାଗ କରି ଦିଅନ୍ତି ତେବେ ସ୍ତ୍ରୀର କର୍ତ୍ତବ୍ୟ ହେଲା ଏଇ ବିପତ୍ତିରେ ଦୁଃଖମୟ ଜୀବନ ବିତାଇ ନିଜର ପାତିବ୍ରତ୍ୟଧର୍ମକୁ ରକ୍ଷା କରିବା, ପରିଣାମରେ ତାହାର କଲ୍ୟାଣ ମଧ୍ୟ ହେବ।

## ଉପସଂହାର

ସତ୍ୟ ଓ ନ୍ୟାୟ ଶେଷରେ ଅବଶ୍ୟ ହିଁ ଶୁଭ ଫଳ ଦେବ, ସୀତାଦେବୀ ନିଜ ଜୀବନରେ କଠୋର ପରୀକ୍ଷା ଦେଇ ସ୍ତ୍ରୀମାନଙ୍କ ପାଇଁ ଏଇ ମର୍ଯ୍ୟାଦା ସ୍ଥାପିତ କରି ଦେଇଛନ୍ତି ଯେ ଯେଉଁ ସ୍ତ୍ରୀ ସୀତାଙ୍କ ପରି ଆପତ୍ତିକାଳରେ ଧର୍ମ ପାଳନ କରିବ, ତାହାର କୀର୍ତ୍ତି ସଂସାରରେ ସବୁଦିନ ପାଇଁ ପ୍ରକାଶିତ ହୋଇଯିବ। ସୀତାଙ୍କ ଠାରେ ପତିଭକ୍ତି, ସୀତାଙ୍କର ଭରତ, ଲକ୍ଷ୍ମଣ ଓ ଶତ୍ରୁଘ୍ନଙ୍କ ସହିତ ନିର୍ଦ୍ଦୋଷ ବାତ୍ସଲ୍ୟ ପ୍ରେମ, ଶାଶୁମାନଙ୍କ ପ୍ରତି ସେବାଭାବ, ସେବକମାନଙ୍କ ପ୍ରତି ପ୍ରେମ ବ୍ୟବହାର, ପିତ୍ରାଳୟରେ ଓ ଶ୍ୱଶୁରାଳୟରେ ସମସ୍ତଙ୍କ ସହିତ ଆଦର୍ଶ ପ୍ରୀତି ଏବଂ ସମସ୍ତଙ୍କୁ ସମ୍ମାନ ଦେବାର ଚେଷ୍ଟା, ଋଷିମାନଙ୍କର ସେବା, ଲବକୁଶଙ୍କ ପରି ବୀର ପୁତ୍ରମାନଙ୍କ ମାତୃତ୍ୱ, ସେମାନଙ୍କୁ ଶିକ୍ଷା ଦେବାରେ ପଟୁତା, ସାହସ, ଧୈର୍ଯ୍ୟ, ତପ, ବୀରତ୍ୱ ଏବଂ ଆଦର୍ଶ ଧର୍ମପରାୟଣତା ଆଦି ସବୁ ଗୁଣ ପୂର୍ଣ୍ଣ ବିକଶିତ ଓ ଅନୁକରଣୀୟ। ଆମର ଯେଉଁ ମାତା ଓ ଭଉଣୀମାନେ ପ୍ରମାଦ, ମୋହ ଓ ଆସକ୍ତି ତ୍ୟାଗ କରି ସୀତାଙ୍କ ଚରିତ୍ରକୁ ଅନୁକରଣ କରିବେ, ସେମାନଙ୍କର ନିଜର କଲ୍ୟାଣ କଥା କ'ଣ କହିବା, ସେମାନେ ନିଜର ପତି ପୁତ୍ରମାନଙ୍କୁ ମଧ୍ୟ ମୁକ୍ତ କରିଦେଇ ପାରିବେ। ଅଧିକ ଆଉ କ'ଣ, ଯାହାଙ୍କ ଉପରେ ତାଙ୍କର ଦୟା ହେବ ସେମାନଙ୍କର ମଧ୍ୟ କଲ୍ୟାଣ ହେବା ସମ୍ଭବ। ଏପରି ସତୀ-ଶିରୋମଣି ପତିବ୍ରତା ସ୍ତ୍ରୀ ଦର୍ଶନ ଓ ପୂଜନର ଯୋଗ୍ୟ। ମନୁଷ୍ୟମାନଙ୍କ

ଦ୍ୱାରା ହିଁ ନୁହେଁ ବରଂ ଦେବତାମାନଙ୍କ ଦ୍ୱାରା ମଧ୍ୟ ପୂଜନୀୟ ଏବଂ ନିଜ ଚରିତ୍ର ଦ୍ୱାରା ତ୍ରିଲୋକକୁ ପବିତ୍ର କରିଦେଇ ପାରନ୍ତି ।

ଯଦ୍ୟପି ସୀତାଦେବୀ ସାକ୍ଷାତ୍ ଭଗବତୀ ଓ ପରମାତ୍ମାଙ୍କ ଶକ୍ତି ଥିଲେ ତଥାପି ସେ ନିଜ ମନୁଷ୍ୟ-ଜୀବନରେ ଲୋକଶିକ୍ଷା ପାଇଁ ଯେଉଁ ଚରିତ୍ର ଗଠନ କରିଥିଲେ ସେ ସବୁ ଏପରି ଯେ ଯାହାର ଅନୁକରଣ ସବୁ ସ୍ତ୍ରୀ କରି ପାରିବେ । ସଂସାରର ମର୍ଯ୍ୟାଦା ପାଇଁ ସୀତାରାମଙ୍କର ଅବତାର ହୋଇଥିଲା । ଅତଏବ ସେମାନଙ୍କ ଚରିତ୍ର ଓ ଉପଦେଶ ଅଲୌକିକ ନ ହୋଇ ଏପରି ବ୍ୟାବହାରିକ ଥିଲା ଯେ ଯାହାକୁ କାମରେ ଲଗାଇ ଆମେ ଲାଭବାନ୍ ହୋଇ ପାରିବା । ଯେଉଁ ସ୍ତ୍ରୀ ଓ ପୁରୁଷ ଏହା କହି କର୍ତ୍ତବ୍ୟରୁ ମୁକ୍ତ ହେବାକୁ ଚାହାନ୍ତି ଯେ 'ଶ୍ରୀରାମସୀତା ସାକ୍ଷାତ୍ ଈଶ୍ୱର ଓ ଶକ୍ତି ଥିଲେ, ଆମେ ସେମାନଙ୍କ ଚରିତ୍ରକୁ ଅନୁକରଣ କରି ପାରିବା ନାହିଁ ।' ସେମାନେ କାପୁରୁଷ ଓ ଅଭକ୍ତ, ସେମାନେ ଶ୍ରୀରାମଙ୍କୁ ଈଶ୍ୱରଙ୍କ ଅବତାର କେବଳ କଥାରେ ମାନନ୍ତି । ବାସ୍ତବ ଭକ୍ତମାନଙ୍କୁ ତ ଶ୍ରୀରାମ-ସୀତାଙ୍କ ଚରିତ୍ରକୁ ଯଥାର୍ଥ ଅନୁକରଣ କରିବା ଉଚିତ ।



# ଦେବୀ କୁନ୍ତୀ

କୁନ୍ତୀ ଦେବୀ ଏକ ଆଦର୍ଶ ମହିଳା ଥିଲେ । ଇଏ ମହାତ୍ମା ପାଣ୍ଡବମାନଙ୍କ ମାତା ଏବଂ ଭଗବାନ୍ ଶ୍ରୀକୃଷ୍ଣଙ୍କ ପିଉସୀ ଥିଲେ । ସେ ବସୁଦେବଙ୍କର ନିଜ ଭଉଣୀ ଥିଲେ ତଥା ତାଙ୍କୁ ରାଜା କୁନ୍ତିଭୋଜଙ୍କୁ ପାଳନ କରିବାକୁ ଦିଆଯାଇଥିଲା । ଜନ୍ମରୁ ତାଙ୍କୁ ଲୋକେ 'ପୃଥା' ନାମରେ ଡାକୁଥିଲେ, ପରନ୍ତୁ ରାଜା କୁନ୍ତିଭୋଜଙ୍କ ପାଖରେ ଲାଳନପାଳନ ହେବାରୁ ଏ 'କୁନ୍ତୀ' ନାମରେ ବିଖ୍ୟାତ ହେଲେ । ଇଏ ବାଲ୍ୟକାଳରୁ ବଡ଼ ସୁଶୀଳା, ସଦାଗ୍ରରିଣୀ, ସଂଯମଶୀଳା ଓ ଭକ୍ତିମତୀ ଥିଲେ । ଥରେ ରାଜା କୁନ୍ତିଭୋଜଙ୍କ ନିକଟକୁ ଜଣେ ତେଜସ୍ୱୀ ବ୍ରାହ୍ମଣ ଅତିଥିରୂପରେ ଆସିଲେ । ତାଙ୍କ ସେବାର କାର୍ଯ୍ୟ ବାଳିକା କୁନ୍ତୀ ଉପରେ ସମର୍ପି ଦିଆ ଯାଇଥିଲା । ଏହାଙ୍କର ବ୍ରାହ୍ମଣମାନଙ୍କ ଉପରେ ବଡ଼ ଭକ୍ତି ଥିଲା ଏବଂ ଅତିଥିସେବାରେ ବଡ଼ ରୁଚି ଥିଲା । ରାଜପୁତ୍ରୀ ପୃଥା ଆଳସ୍ୟ ଓ ଅଭିମାନ ତ୍ୟାଗ କରି ବ୍ରାହ୍ମଣଦେବତାଙ୍କ ସେବାରେ ମନପ୍ରାଣ ଲଗାଇ ଦେଇଥିଲେ । ଇଏ ଶୁଦ୍ଧ ମନରେ ସେବା କରି ବ୍ରାହ୍ମଣଦେବତାଙ୍କୁ ପୂର୍ଣ୍ଣରୂପେ ପ୍ରସନ୍ନ କରିଦେଲେ । ବ୍ରାହ୍ମଣଦେବତାଙ୍କ ବ୍ୟବହାର ବଡ଼ ଅଦ୍ଭୁତ ଥିଲା । କେବେ ସେ ଅସମୟରେ ଆସୁଥିଲେ, କେବେ ଆସୁ ନ ଥିଲେ, ପୁଣି କେବେ ଏପରି ଜିନିଷ ଖାଇବାକୁ ମାଗୁଥିଲେ ଯେ ଯାହା ମିଳିବା  ଅତ୍ୟନ୍ତ କଠିନ ହୁଏ; କିନ୍ତୁ ପୃଥା ତାଙ୍କର ସମସ୍ତ କାମ ଏପରି କରି ଦେଉଥିଲେ ଯେ ଯେପରି ସେ ପ୍ରଥମରୁ ସବୁ ତିଆରି କରି ରଖିଥିଲେ । ଏହାଙ୍କର ଶୀଳସ୍ୱଭାବ ଏବଂ ସଂଯମରେ ବ୍ରାହ୍ମଣଙ୍କର ବଡ଼ ସନ୍ତୋଷ ହେଲା । କୁନ୍ତୀଙ୍କର ପିଲାଦିନର ଏଇ ବ୍ରାହ୍ମଣସେବା ତାଙ୍କ ପାଇଁ ବଡ଼ କଲ୍ୟାଣପ୍ରଦ ସିଦ୍ଧ ହୋଇଥିଲା ଏବଂ ଏହାଦ୍ୱାରା ଏହାଙ୍କ ଜୀବନରେ ସଂଯମ, ସଦାଗ୍ରର, ତ୍ୟାଗ ଏବଂ ସେବାଭାବର ମୂଳଦୁଆ ପଡ଼ିଗଲା । ଭବିଷ୍ୟତରେ ତାଙ୍କ ଭିତରେ ଏହି ଗୁଣଗୁଡ଼ିକର ଅଦ୍ଭୁତ ବିକାଶ ହୋଇଥିଲା ।

କୁନ୍ତୀଙ୍କ ଭିତରେ ନିଷ୍କାମଭାବର ବିକାଶ ପିଲାଦିନରୁ ହିଁ ହୋଇଥିଲା । ସେ ବଡ଼ ତତ୍ପରତା ଏବଂ ଭକ୍ତିର ସହିତ ମହାତ୍ମା ବ୍ରାହ୍ମଣଙ୍କ ସେବା କରିବା ପୂରା ଏକ ବର୍ଷ ହୋଇଗଲା । ତାଙ୍କର ସେବା ମନ୍ତ୍ରର ଅନୁଷ୍ଠାନ

ପୂରା ହେଲା । ଏହାଙ୍କ ସେବାରେ ଖୋଜିଲେ ମଧ୍ୟ କୌଣସି ତ୍ରୁଟି ବ୍ରାହ୍ମଣ ଦେଖି ନ ଥିଲେ । ତେଣୁ ସେ ଏହାଙ୍କ ଉପରେ ଅତ୍ୟନ୍ତ ସନ୍ତୁଷ୍ଟ ହେଲେ । ସେ କହିଲେ 'ପୁତ୍ରୀ! ମୁଁ ତୋର ସେବାରେ ଅତ୍ୟନ୍ତ ପ୍ରସନ୍ନ । ମୋଠାରୁ କିଛି ବର ମାଗି ନେ ।' କୁନ୍ତୀ ବ୍ରାହ୍ମଣଦେବତାଙ୍କୁ ବଡ଼ ସୁନ୍ଦର ଉତ୍ତର ଦେଲେ । ଶ୍ରୀକୃଷ୍ଣଙ୍କ ପିଉସୀ ଏବଂ ପାଣ୍ଡବମାନଙ୍କର ଭାବୀ ମାତାଙ୍କର ଏଇ ଉତ୍ତର ସର୍ବଥା ତାଙ୍କ ଅନୁରୂପ ଥିଲା । କୁନ୍ତୀ କହିଲେ–'ଭଗବନ୍! ଆପଣ ଓ ପିତା ମୋ ଉପରେ ପ୍ରସନ୍ନ, ମୋର ସବୁ କାର୍ଯ୍ୟ ତ ଏଥିରେ ସଫଳ ହୋଇଗଲା । ଏବେ ମୋତେ ବରର କୌଣସି ଆବଶ୍ୟକତା ନାହିଁ ।' ଗୋଟିଏ ଅଳ୍ପବୟସ୍କା ବାଳିକା ମଧ୍ୟରେ ବିଲକ୍ଷଣ ସେବାଭାବ ସଙ୍ଗେ ସଙ୍ଗେ ଏପରି ନିଷ୍କାମତାର ସଂଯୋଗ ମଣିକାଞ୍ଚନ ସଂଯୋଗ ପରି ଥିଲା । ଆମ ଦେଶର ବାଳିକାମାନଙ୍କୁ କୁନ୍ତୀଙ୍କର ଏଇ ଆଦର୍ଶ ନିଷ୍କାମ ସେବାଭାବରୁ ଶିକ୍ଷା ଗ୍ରହଣ କରିବା ଉଚିତ । ଅତିଥିସେବା ଆମର ସାମାଜିକ ଜୀବନର ପ୍ରାଣ ଏବଂ ତାରି ଶିକ୍ଷା ଭାରତବାସୀଙ୍କୁ ପିଲାଦିନରୁ ହିଁ ମିଳି ଯାଉଥିଲା । ଯେଉଁ ସେବା ପ୍ରସନ୍ନତାପୂର୍ବକ କରାଯାଏ, ଅର୍ଥାତ୍ ଯେଉଁ ସେବାଦ୍ୱାରା ଭାର ବା ଅଧୀରତା ପ୍ରତୀତ ନ ହୁଏ ଏବଂ ଯାହା ବଦଳରେ କିଛି ଇଚ୍ଛା ନ କରାଯାଏ, ତାହାହିଁ ବାସ୍ତବ ଓ ସାତ୍ତ୍ୱିକ । ଆଜିକାଲିର ସେବାରେ ପ୍ରାୟଃ ଏଇ ଦୁଇଟି କଥାର ଅଭାବ ଦେଖାଯାଏ । ପ୍ରସନ୍ନତାପୂର୍ବକ ନିଷ୍କାମଭାବରେ କରାଯାଉଥିବା ସେବା କଲ୍ୟାଣର ପରମସାଧନ ହୋଇଯାଏ ।

କୁନ୍ତୀ ବ୍ରାହ୍ମଣଙ୍କଠାରୁ କୌଣସି ବର ନ ମାଗିବାରୁ ସେ ତାଙ୍କୁ ଦେବତାମାନଙ୍କୁ ଆବାହନ କରିବା ମନ୍ତ୍ର ଗ୍ରହଣ କରିବାକୁ କହିଲେ । ସେ କିଛି ନା କିଛି କୁନ୍ତୀଙ୍କୁ ଦେଇ ଯିବାକୁ ଚାହୁଁଥିଲେ । ଏବେ ବ୍ରାହ୍ମଣଙ୍କ ଅପମାନ ଭୟରେ କୁନ୍ତୀ ମନା କରି ପାରିଲେ ନାହିଁ । ତେଣୁ ସେ କୁନ୍ତୀଙ୍କୁ ଅଥର୍ବବେଦର ଶିରୋଭାଗରେ ଆସିଥିବା ମନ୍ତ୍ରର ଉପଦେଶ ଦେଲେ ଏବଂ କହିଲେ 'ଏଇ ମନ୍ତ୍ର ବଳରେ ତୁ ଯେଉଁ ଦେବତାଙ୍କୁ ଆବାହନ କରିବୁ, ସେ ତୋର ଅଧୀନ ହୋଇଯିବେ ।' ଏତିକି କହି ବ୍ରାହ୍ମଣ ସେଠାରେ ଅନ୍ତର୍ଧାନ ହୋଇଗଲେ । ସେ

ବ୍ରାହ୍ମଣ ଆଉ କେହି ନୁହଁନ୍ତି । ଉଗ୍ରତପା ମହର୍ଷି ଦୁର୍ବାସା ଥିଲେ । ତାଙ୍କରି ଦେଇଥିବା ମନ୍ତ୍ର ପ୍ରଭାବରେ କୁନ୍ତୀ ଭବିଷ୍ୟତରେ ଧର୍ମ ଆଦି ଦେବତାମାନଙ୍କ ଠାରୁ ଯୁଧିଷ୍ଠିର ଆଦି ପୁତ୍ରମାନଙ୍କୁ ପ୍ରାପ୍ତ କରିଥିଲେ ।

କୁନ୍ତୀଙ୍କ ବିବାହ ମହାରାଜ ପାଣ୍ଡୁଙ୍କ ସହିତ ହୋଇଥିଲା । ମହାରାଜ ପାଣ୍ଡୁ ବଡ଼ ଧର୍ମାତ୍ମା ଥିଲେ । ତାଙ୍କ ଦ୍ୱାରା ଥରେ ଭୁଲରେ ମୃଗରୂପଧାରୀ କିନ୍ଦମ ମୁନିଙ୍କ ପ୍ରତି ହିଂସା ହୋଇଗଲା । ଏଇ ଘଟଣାରୁ ତାଙ୍କ ମନରେ ବଡ଼ ଗ୍ଳାନି ଓ ବୈରାଗ୍ୟ ଜାତ ହେଲା ଏବଂ ସେ ସବୁକିଛି ତ୍ୟାଗ କରି ବଣରେ ରହିବାକୁ ସ୍ଥିର କଲେ । ଦେବୀ କୁନ୍ତୀ ବଡ଼ ପତିଭକ୍ତା ଥିଲେ । ସେ ମଧ୍ୟ ନିଜ ପତିଙ୍କ ସଙ୍ଗରେ ଇନ୍ଦ୍ରିୟମାନଙ୍କୁ ବଶ କରି ତଥା କାମଜନ୍ୟ ସୁଖକୁ ଜଳାଞ୍ଜଳି ଦେଇ ବଣରେ ରହିବାକୁ ପ୍ରସ୍ତୁତ ହୋଇଗଲେ । ସେଦିନଠାରୁ ସେ ଜୀବନପର୍ଯ୍ୟନ୍ତ ନିୟମପୂର୍ବକ ବ୍ରହ୍ମଚର୍ଯ୍ୟବ୍ରତର ପାଳନ କଲେ ଏବଂ ସଂଯମପୂର୍ବକ ରହିଲେ । ପତିଙ୍କର ସ୍ୱର୍ଗବାସ ହେବା ପରେ ସେ ନିଜର ପିଲାମାନଙ୍କ ରକ୍ଷାର ଭାର ନିଜର ଛୋଟ ସଉତୁଣୀ ମାଦ୍ରୀକୁ ସମର୍ପି ଦେଇ ନିଜର ପତିଙ୍କୁ ଅନୁଗମନ କରିବା ପାଇଁ ବିଚାର କଲେ । ପରନ୍ତୁ ମାଦ୍ରୀ ତାର ବିରୋଧ କଲେ । ସେ କହିଲେ, 'ଭଉଣୀ! ମୁଁ ଏବେ ଯୁବତୀ, ଏଣୁ ମୁଁ ପତିଦେବଙ୍କ ଅନୁଗମନ କରିବି । ତୁମେ ମୋର ପିଲାଙ୍କୁ ସମ୍ଭାଳ । କୁନ୍ତୀ ମାଦ୍ରୀଙ୍କ କଥା ମାନି ନେଲେ ଏବଂ ଶେଷ ପର୍ଯ୍ୟନ୍ତ ତାଙ୍କ ପୁତ୍ରଙ୍କୁ ନିଜ ପୁତ୍ରଙ୍କ ଠାରୁ ବଳି ଅଧିକ ପାଳନ କଲେ । ସପତ୍ନୀ ଏବଂ ତାଙ୍କ ପୁତ୍ରଙ୍କ ସହିତ କି ପ୍ରକାର ବ୍ୟବହାର କରିବା ଉଚିତ, ଏହାର ଶିକ୍ଷା ମଧ୍ୟ ଆମର ମା'ଭଉଣୀଙ୍କୁ କୁନ୍ତୀଙ୍କ ଜୀବନରୁ ଶିଖିବା ଉଚିତ । ପତିଙ୍କ ଜୀବନକାଳରେ ସେ ମାଦ୍ରୀଙ୍କ ସହିତ ଛୋଟ ଭଉଣୀ ପରି ବ୍ୟବହାର କରିଥିଲେ ଏବଂ ସେ ସତୀ ହେବା ପରେ ତାଙ୍କ ପୁତ୍ରଙ୍କ ପ୍ରତି ସେହି ଭାବ ରଖିଥିଲେ, ଯାହା ସାଧ୍ୱୀ ସ୍ତ୍ରୀମାନଙ୍କର ରଖିବା ଉଚିତ । ସହଦେବଙ୍କ ପ୍ରତି ଏହାଙ୍କର ବିଶେଷ ମମତା ଥିଲା ଏବଂ ସେ ମଧ୍ୟ ଏହାଙ୍କଠାରେ ବହୁତ ଅଧିକ ସ୍ନେହଶ୍ରଦ୍ଧା ରଖୁଥିଲେ ।

ପତିଙ୍କ ମୃତ୍ୟୁପରେ କୁନ୍ତୀଦେବୀଙ୍କର ଜୀବନ ବରାବର କଷ୍ଟରେ ବିତିଥିଲା । ପରନ୍ତୁ ଇଏ ବଡ଼ ବିଚାରଶୀଳ ଏବଂ ଧୈର୍ଯ୍ୟବତୀ ଥିଲେ ।

ଏଣୁ ସେ କଷ୍ଟକୁ କିଛି ବି ଚିନ୍ତା କରି ନଥିଲେ ଏବଂ ଶେଷ ପର୍ଯ୍ୟନ୍ତ ଧର୍ମରେ ଆରୂଢ଼ ଥିଲେ । ଦୁର୍ଯ୍ୟୋଧନର ଅତ୍ୟାଚାରକୁ ସେ ଚୁପ୍‌ଚାପ ସହି ନେଉଥିଲେ । ତାଙ୍କ ସ୍ୱଭାବ ବଡ଼ କୋମଳ ଓ ଦୟାଳୁ ଥିଲା । ତାଙ୍କର ନିଜ କଷ୍ଟ ପାଇଁ କିଛି ଚିନ୍ତା ନ ଥିଲା; ପରନ୍ତୁ ଅନ୍ୟର କଷ୍ଟ ଦେଖିପାରୁ ନ ଥିଲେ । ଲାକ୍ଷାଭବନରୁ ବାହାରି ଯେବେ ସେ ଏକଚକ୍ରା ନଗରୀରେ ରହିବାକୁ ଲାଗିଲେ, ସେହି ସମୟରେ ସେଠାକାର ପ୍ରଜାଙ୍କ ଉପରେ ବଡ଼ ବିପଦ ପଡ଼ିଥିଲା । ସେହି ନଗରୀ ପାଖରେ ବକାସୁର ନାମରେ ଗୋଟିଏ ରାକ୍ଷସ ଥିଲା । ସେହି ରାକ୍ଷସ ପାଇଁ ନଗରବାସୀଙ୍କୁ ପ୍ରତିଦିନ ଗୋଟିଏ ଗାଡ଼ି ଅନ୍ନ ତଥା ଦୁଇଟି ମଇଁଷି ଦେବା ପାଇଁ ପଡୁଥିଲା । ଯେଉଁ ଲୋକ ଏହାକୁ ନେଇ ଯାଉଥିଲା, ତାକୁ ମଧ୍ୟ ସେଇ ରାକ୍ଷସ ଖାଇ ଯାଉଥିଲା । ସେଠାକାର ନଗରବାସୀଙ୍କୁ ପାଳି କରି ଏଇ କାମ କରିବାକୁ ପଡୁଥିଲା । ପାଣ୍ଡବମାନେ ଯେଉଁ ବ୍ରାହ୍ମଣ ଘରେ ଭିକ୍ଷୁକଙ୍କ ରୂପରେ ରହୁଥିଲେ, ଦିନେ ସେଇ ଘରେ ରାକ୍ଷସ ପାଇଁ ଲୋକ ପଠାଇବାର ପାଳି ଆସିଲା । ବ୍ରାହ୍ମଣପରିବାରରେ ବିଷାଦର ଛାୟା ଖେଳିଗଲା । କୁନ୍ତୀ ଏଇ କଥାର ଖବର ନେବା ପରେ ତାଙ୍କ ହୃଦୟ ଦୟାରେ ଭରିଗଲା । ସେ ବିଚାର କଲେ–'ଆମେ ଥାଉଁ ଥାଉଁ ବ୍ରାହ୍ମଣ ପରିବାରକୁ କଷ୍ଟ ଭୋଗିବାକୁ ପଡ଼ିଲା, ଏହା ଆମ ପକ୍ଷରେ ବଡ଼ ଲଜ୍ଜାର କଥା ହେବ । ପୁଣି ଇଏ ତ ଆମର ଆଶ୍ରୟଦାତା, ଏହାଙ୍କର ପ୍ରତ୍ୟୁପକାର କୌଣସି-ନା-କୌଣସି ରୂପରେ ଆମର କରିବା ଉଚିତ । ଆବଶ୍ୟକ ବେଳେ ଉପକାରୀ ଲୋକର ପ୍ରତ୍ୟୁପକାର ନ କଲେ ଧର୍ମରୁ ଚ୍ୟୁତ ହେବାକୁ ପଡ଼େ । ଯେତେବେଳେ ଆମେ ଏହାଙ୍କ ଘରେ ଅଛୁଁ ତେବେ ଏହାଙ୍କ ଦୁଃଖକୁ ବାଣ୍ଟି ନେବା ଆମର କର୍ତ୍ତବ୍ୟ ।' ଏହା ବିଚାର କରି କୁନ୍ତୀ ବ୍ରାହ୍ମଣଙ୍କ ଘରକୁ ଗଲେ । ସେ ଦେଖିଲେ ଯେ ବ୍ରାହ୍ମଣ ନିଜର ପୁତ୍ର ଓ ପତ୍ନୀଙ୍କ ସହିତ ବସିଛନ୍ତି । ସେ ନିଜ ସ୍ତ୍ରୀକୁ କହୁଥିଲେ ଯେ 'ତୁମେ କୁଳୀନା, ଶୀଳବତୀ ଏବଂ ପିଲାମାନଙ୍କ ମାଆ । ମୁଁ ରାକ୍ଷସଠାରୁ ନିଜ ଜୀବନ ବଞ୍ଚାଇବା ପାଇଁ ତୁମକୁ ପଠାଇ ପାରିବି ନାହିଁ ।' ପତିଙ୍କ କଥା ଶୁଣି ବ୍ରାହ୍ମଣୀ କହିଲେ–'ନା, ମୁଁ ସ୍ୱୟଂ

ତାହା ପାଖକୁ ଯିବି । ପତ୍ନୀ ପାଇଁ ସବୁଠାରୁ ବଳି ସନାତନ କର୍ତ୍ତବ୍ୟ ଏହି ଯେ ସେ ନିଜର ପ୍ରାଣକୁ ବଳିଦାନ କରି ପତିଙ୍କ ମଙ୍ଗଳ କରିବେ । ସ୍ତ୍ରୀମାନଙ୍କ ପାଇଁ ଏହା ବଡ଼ ସୌଭାଗ୍ୟର କଥା ଯେ ନିଜର ପତିଙ୍କ ପୂର୍ବରୁ ସେ ପରଲୋକବାସିନୀ ହୋଇଯିବେ । ଏହା ମଧ୍ୟ ସମ୍ଭବ ଯେ ସ୍ତ୍ରୀକୁ ଅବଧ୍ୟ ମଣି ସେ ରାକ୍ଷସ ମୋତେ ମାରି ନ ପାରେ । ପୁରୁଷଙ୍କ ବଧ ନିର୍ବିବାଦ ଏବଂ ସ୍ତ୍ରୀଙ୍କର ସନ୍ଦେହଗ୍ରସ୍ତ, ଏଣୁ ମୋତେ ହିଁ ତାହା ପାଖକୁ ପଠାଇ ଦିଅ ।' ବାପାମାଆଙ୍କର ଦୁଃଖଭରା କଥା ଶୁଣି କନ୍ୟା କହିଲା–'ଆପଣ କାହିଁକି କାନ୍ଦୁଛନ୍ତି? ଦେଖନ୍ତୁ ଧର୍ମ ଅନୁସାରେ ଆପଣ ଦୁହେଁ ମୋତେ ଦିନେ ନା ଦିନେ ଛାଡ଼ି ଦେବେ । ଏଣୁ ଆଜି ଛାଡ଼ି ଦେଇ ନିଜକୁ ରକ୍ଷା କାହିଁକି କରୁ ନାହାନ୍ତି । ଲୋକ ସନ୍ତାନ ଏଥିପାଇଁ ଚାହାନ୍ତି ଯେ ସେ ଆମକୁ ଦୁଃଖରୁ ବଞ୍ଚାଇଦେବେ । ଏହା ଶୁଣି ବାପମା ଦୁହେଁ କାନ୍ଦିବାକୁ ଲାଗିଲେ, କନ୍ୟା ମଧ୍ୟ ନ କାନ୍ଦି ରହି ପାରିଲା ନାହିଁ । ସମସ୍ତଙ୍କୁ କାନ୍ଦିବାର ଦେଖି ଛୋଟିଆ ବ୍ରାହ୍ମଣବାଳକ କହିବାକୁ ଲାଗିଲା–'ବାପା! ମା! ନାନୀ! କାନ୍ଦନା ।' ପୁଣି ଖଣ୍ଡେ କୁଟା ଉଠାଇ ହସି ହସି କହିଲା– 'ମୁଁ ଏଥିରେ ରାକ୍ଷସକୁ ମାରିଦେବି ।' ଏବେ ସମସ୍ତେ ହସିଲେ । କୁନ୍ତୀ ଏସବୁ ଦେଖୁଥିଲେ ଓ ଶୁଣୁଥିଲେ । ସେ ଟିକିଏ ଆଗକୁ ଯାଇ ସେମାନଙ୍କୁ କହିଲେ–'ମହାରାଜ! ଆପଣଙ୍କର ଗୋଟିଏ ପୁଅ ଓ ଗୋଟିଏ ଝିଅ । ଆପଣଙ୍କ ଦୟାରୁ ମୋର ପାଞ୍ଚଟି ପୁଅ । ରାକ୍ଷସପାଖକୁ ଭୋଜନ ପହଞ୍ଚାଇବା ପାଇଁ ମୁଁ ସେମାନଙ୍କ ମଧ୍ୟରୁ କାହାକୁ ହେଲେ ପଠାଇ ଦେବି, ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ ।' ବ୍ରାହ୍ମଣଦେବତା ଦେବୀ କୁନ୍ତୀଙ୍କର ଏଇ ପ୍ରସ୍ତାବକୁ ଶୁଣି ଆଶ୍ଚର୍ଯ୍ୟ ହେଲେ । ସେ କହିଲେ–'ଦେବି! ଆପଣଙ୍କର ଏପରି କହିବା ଆପଣଙ୍କ ଅନୁରୂପ ଅଟେ; ପରନ୍ତୁ ମୁଁ ତ ନିଜ ପାଇଁ ନିଜର ଅତିଥିଙ୍କୁ ହତ୍ୟା କରାଇ ପାରିବି ନାହିଁ ।' କୁନ୍ତୀ ତାଙ୍କୁ କହିଲେ, 'ମୁଁ ଯେଉଁ ପୁତ୍ରକୁ ରାକ୍ଷସ ପାଖକୁ ପଠାଇବି, ସେ ବଡ଼ ବଳବାନ୍, ମନ୍ତ୍ରସିଦ୍ଧ ଏବଂ ତେଜସ୍ୱୀ; ତାର କେହି କିଛି କ୍ଷତି କରି ପାରିବେ ନାହିଁ ।' ଏଥିରେ ବ୍ରାହ୍ମଣ ରାଜି ହୋଇଗଲେ । କୁନ୍ତୀ ଭୀମସେନକୁ ସେହି କାମ ପାଇଁ ରାକ୍ଷସ

ପାଖକୁ ପଠାଇ ଦେଲେ । ଭଲା, ଅନ୍ୟର ପ୍ରାଣରକ୍ଷା ପାଇଁ ଏଇ ପ୍ରକାର ନିଜର ହୃଦୟର ଅଂଶକୁ ଜାଣିଶୁଣି କେଉଁ ମାତା ବଳିଦାନ କରି ପାରିବ? କହିବାକୁ ପଡ଼ିବ ନାହିଁ ଯେ କୁନ୍ତୀଙ୍କ ଏଇ ଆଦର୍ଶ ତ୍ୟାଗର ପ୍ରଭାବରେ ସଂସାରରେ ବହୁତ ଭଲ ପ୍ରଭାବ ପଡ଼ିଲା । ଅତଏବ ସମସ୍ତଙ୍କୁ ଏହାଦ୍ୱାରା ଶିକ୍ଷା ନେବା ଉଚିତ ।

ଦେବୀ କୁନ୍ତୀଙ୍କର ସତ୍ୟପ୍ରେମ ମଧ୍ୟ ଆଦର୍ଶ ଥିଲା । ସେ ବିନୋଦରେ ମଧ୍ୟ କେବେ ମିଥ୍ୟା କଥା କହୁ ନ ଥିଲେ । ଭୁଲରେ ତାଙ୍କ ମୁଖରୁ ଯେଉଁ କଥା ବାହାରି ଯାଉଥିଲା, ତାହା ଜୀବନ ସାରା ପାଳନ କରୁଥିଲେ । ଏଇ ପ୍ରକାର ସତ୍ୟନିଷ୍ଠା ଇତିହାସର ପୃଷ୍ଠା ଓଲଟାଇଲେ ମଧ୍ୟ ଅନ୍ୟ ସ୍ଥାନରେ ଦେଖିବାକୁ ମିଳେ ନାହିଁ । ଅର୍ଜୁନ ଓ ଭୀମ ସ୍ୱୟଂବରରୁ ଦ୍ରୌପଦୀଙ୍କୁ ଜୟ କରି ଯେତେବେଳେ ମା'ଙ୍କ ପାଖକୁ ନେଇ ଆସିଲେ ଏବଂ କହିଲେ ଯେ 'ମା! ଆମେ ଆଜି ଏଇ ଭିକ୍ଷା ଆଣିଛୁ ।' କୁନ୍ତୀ ସେମାନଙ୍କୁ ନ ଦେଖି କହିଦେଲେ 'ପୁତ୍ର! ପାଞ୍ଚଭାଇ ମିଳି ଏହାର ଉପଯୋଗ କର ।' ଯେତେବେଳେ ସେ ଜାଣିପାରିଲେ ଯେ ସେମାନେ ଏକ କନ୍ୟା ଆଣିଛନ୍ତି, ସେତେବେଳେ ସେ ବଡ଼ ଅଡୁଆରେ ପଡ଼ିଗଲେ । ସେ ଚିନ୍ତା କଲେ– 'ଯଦି ମୁଁ ନିଜର କଥା ଫେରାଇ ନେବି ତ ମୋତେ ଅସତ୍ୟ ଦୋଷ ଲାଗିଯିବ; ଏବଂ ଯଦି ନିଜର ପୁତ୍ରମାନଙ୍କୁ ସେହି ଅନୁସାରେ ଚଳିବା ପାଇଁ କହେ ତେବେ ତ ସନାତନ ମର୍ଯ୍ୟାଦା ଲୋପ ହୋଇଯିବ । ପାଞ୍ଚ ଭାଇ ଏକ ସ୍ତ୍ରୀକୁ ବିବାହ କରିବେ–ଏହା କେବେହେଲେ ପ୍ରଥମରୁ ଦେଖାଯାଇ ନ ଥିଲା କି ଶୁଣାଯାଇ ନ ଥିଲା ।' ଏପରି ସ୍ଥିତିରେ ଦେବୀ କୁନ୍ତୀ କିଛି ସ୍ଥିର କରି ପାରିଲେ ନାହିଁ, ସେ କିଂକର୍ତ୍ତବ୍ୟବିମୂଢ଼ ହୋଇଗଲେ । ଶେଷରେ ସେ ଧର୍ମରାଜ ଯୁଧିଷ୍ଠିରଙ୍କ ସମ୍ମତି ପଗ୍ଚରିଲେ ଏବଂ ସେ ସତ୍ୟ ଉପରେ ପ୍ରତିଷ୍ଠିତ ରହିବା ପାଇଁ ପରାମର୍ଶ ଦେଲେ । ପରେ ରାଜା ଦ୍ରୁପଦଙ୍କ ଆଡୁ ଆପତ୍ତି ହେବାରୁ ବେଦବ୍ୟାସ ଦ୍ରୌପଦୀଙ୍କର ପୂର୍ବଜନ୍ମ କଥା କହି ବୁଝାଇଦେଲେ ଯେ ଶଙ୍କରଙ୍କ ବରଦାନରେ ଏଇ ପାଞ୍ଚଜଣ ହିଁ ଦ୍ରୁପଦକୁମାରୀଙ୍କ ପାଣିଗ୍ରହଣ କରିବେ । ଏଇ ପ୍ରକାରେ ପାଞ୍ଚଭାଇଙ୍କ

ସହିତ ଦ୍ରୁପଦକୁମାରୀଙ୍କର ବିଧିପୂର୍ବକ ବିବାହ ହୋଇଗଲା । ଦେବୀ କୁନ୍ତୀଙ୍କର ସତ୍ୟନିଷ୍ଠାର ବିଜୟ ହେଲା । ତାଙ୍କର ମୁଖରୁ ଏପରି କଥା ବାହାରିଗଲା, ଯାହା ହିଁ ହେବାର ଥିଲା । ସତ୍ୟର ଦୃଢ଼ତାପୂର୍ବକ ଆଶ୍ରୟ ନେଲେ ଏପରି ହେବା କାହାରି ପକ୍ଷରେ ଅସମ୍ଭବ ନୁହେଁ ।

ଦେବୀ କୁନ୍ତୀଙ୍କ ଜୀବନ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ବଡ଼ ତ୍ୟାଗପୂର୍ଣ୍ଣ, ତପସ୍ୟାମୟ ଓ ଅନାସକ୍ତ ଥିଲା । ପାଣ୍ଡବଙ୍କ ବନବାସ ଓ ଅଜ୍ଞାତବାସ ସମୟରେ ସେ ଅଲଗା ହସ୍ତିନାପୁରରେ ରହିଥିଲେ ଏବଂ ସେଠାରୁ ସେ ନିଜର ପୁତ୍ରଙ୍କ ପାଇଁ ନିଜର ପୁତୁରା ଭଗବାନ୍ ଶ୍ରୀକୃଷ୍ଣଙ୍କ ଦ୍ୱାରା କ୍ଷତ୍ରିୟଧର୍ମରେ ଦୃଢ଼ ରହିବା ପାଇଁ ସନ୍ଦେଶ ପଠାଇଥିଲେ । ଇଏ ବିଦୁଳା ଓ ସଂଜୟଙ୍କ ଦୃଷ୍ଟାନ୍ତ ଦେଇ ବଡ଼ ମାର୍ମିକ ଶବ୍ଦରେ ସେମାନଙ୍କୁ କହି ପଠାଇଥିଲେ 'ପୁତ୍ର! ଯେଉଁ କାର୍ଯ୍ୟ ପାଇଁ କ୍ଷତ୍ରିୟାଣୀ ପୁତ୍ର ଉତ୍ପନ୍ନ କରେ, ସେଇ କାର୍ଯ୍ୟ କରିବା ସମୟ ଆସିଗଲା ।'* ମହାଭାରତ ଯୁଦ୍ଧ ସମୟରେ ମଧ୍ୟ ସେ ସେଠାରେ ରହିଥିଲେ ଏବଂ ଯୁଦ୍ଧ-ସମାପ୍ତି ପରେ ଯେବେ ଧର୍ମରାଜ ଯୁଧିଷ୍ଠିର ସମ୍ରାଟ ପଦରେ ଅଭିଷିକ୍ତ ହେଲେ ଏବଂ ତାଙ୍କୁ ରାଜମାତା ହେବାର ସୌଭାଗ୍ୟ ପ୍ରାପ୍ତ ହେଲା, ସେହି ସମୟରେ ସେ ପୁତ୍ରବିୟୋଗରେ ଦୁଃଖୀ ନିଜର ବଡ଼ଯାଆ-ଦେଢ଼ଶୁରଙ୍କ ସେବାର ଭାର ନିଜେ ନେଇଥିଲେ ଏବଂ ଦ୍ୱେଷ ଓ ଅଭିମାନରହିତ ହୋଇ ସେମାନଙ୍କ ସେବାରେ ସମୟ କଟାଇବାକୁ ଲାଗିଲେ । ଏପରି କି ଯେତେବେଳେ ସେ ଦୁହେଁ ଯୁଧିଷ୍ଠିରଙ୍କ ଅନୁମତି ନେଇ ବଣକୁ ଗଲେ, ସେଇ ସମୟରେ ସେ ଚୁପ୍‌ଚାପ ସେମାନଙ୍କ ସଙ୍ଗରେ ଯାଇଥିଲେ ଏବଂ ଯୁଧିଷ୍ଠିର ଆଦି ବୁଝାଇଲା ପରେ ମଧ୍ୟ ନିଜର ଦୃଢ଼ ନିଶ୍ଚୟରୁ ବିଚଳିତ ହୋଇ ନ ଥିଲେ । ଜୀବନସାରା ଦୁଃଖ ଓ କ୍ଳେଶ ଭୋଗିବା ପରେ ସୁଖର ଦିନ ଆସିବା ବେଳେ ମଧ୍ୟ ସାଂସାରିକ ସୁଖଭୋଗକୁ ତିରସ୍କାରପୂର୍ବକ ସ୍ୱେଚ୍ଛାରେ ତ୍ୟାଗ, ତପସ୍ୟା ଏବଂ ସେବାମୟ ଜୀବନ ସ୍ୱୀକାର କରିବା, ଦେବୀ କୁନ୍ତୀଙ୍କ ପରି ପବିତ୍ର ଆତ୍ମାଙ୍କର ହିଁ କାମ ଥିଲା । ଯେଉଁ ଦେଢ଼ଶୁର ଓ ଯାଆଙ୍କଠାରୁ ଏହାଙ୍କୁ

* ଯଦର୍ଥଂ କ୍ଷତ୍ରିୟା ସୂତେ ତସ୍ୟ କାଲୋଽୟମାଗତଃ ॥ (ମହା. ଉଦ୍ୟୋଗ. ୧୩୭ ।୧୦)

ତଥା ଏହାଙ୍କର ପୁତ୍ର ଏବଂ ପୁତ୍ରବଧୂମାନଙ୍କୁ କଷ୍ଟ, ଅପମାନ ଏବଂ ଅତ୍ୟାଗ୍ରର ଅତିରିକ୍ତ ଆଉ କିଛି ମିଳି ନ ଥିଲା, ସେଇ ଦେଢ଼ଶୁର ଓ ଯାଆଙ୍କ ପାଇଁ ଏପରି ତ୍ୟାଗ ସଂସାରରେ କେଉଁଠାରେ କ'ଣ ଦେଖିବାକୁ ମିଳେ? ଆମର ମା'ମାନଙ୍କୁ ଏବଂ ଭଉଣୀଙ୍କୁ କୁନ୍ତୀଙ୍କର ଏଇ ଅନୁପମ ତ୍ୟାଗରୁ ଶିକ୍ଷା ନେବା ଉଚିତ।

ଦେବୀ କୁନ୍ତୀଙ୍କୁ ବଣକୁ ଯାଉଥିବା ସମୟରେ ଭୀମସେନ ବୁଝାଇଲେ ଯେ ‘‘ମାଆ! ଯଦି ତୁମର ଶେଷରେ ଏପରି କରିବାକୁ ଥିଲା ତେବେ ପୁଣି ବ୍ୟର୍ଥରେ ଆମ୍ଭମାନଙ୍କ ଦ୍ୱାରା ଏତେ ନରସଂହାର କାହିଁକି କରାଉଥିଲ? ଆମର ବନବାସୀ ପିତାଙ୍କ ମୃତ୍ୟୁପରେ ଆମକୁ ବଣରୁ ନଗରକୁ କାହିଁକି ଆଣିଲ?’’ ସେ ସମୟରେ ଦେବୀ କୁନ୍ତୀ ତାଙ୍କୁ ଯେଉଁ ଉତ୍ତର ଦେଇଥିଲେ, ତାହା ହୃଦୟରେ ଅଙ୍କିତ କରିବାଯୋଗ୍ୟ। ସେ କହିଲେ–‘ପୁତ୍ର ! ତୁମ୍ଭେମାନେ ଭୀରୁ ହୋଇ ହାତ ଉପରେ ହାତ ରଖି ବସି ରୁହ ନାହିଁ, କ୍ଷତ୍ରିୟୋଚିତ ପୁରୁଷାର୍ଥ ତ୍ୟାଗ କରି ଅପମାନପୂର୍ଣ୍ଣ ଜୀବନ ବ୍ୟତୀତ କର ନାହିଁ, ଶକ୍ତି ଥାଉଁ ଥାଉଁ ନିଜର ନ୍ୟାୟୋଚିତ ଅଧିକାରରୁ ସବୁଦିନ ପାଇଁ ବଞ୍ଚିତ ହୁଅ ନାହିଁ–ଏଣୁ ମୁଁ ତୁମ୍ଭମାନଙ୍କୁ ଯୁଦ୍ଧ ପାଇଁ ଉତ୍ତେଜିତ କରିଥିଲି, ନିଜ ସୁଖ ଇଚ୍ଛାରେ ଏପରି କରି ନଥିଲି। ମୋତେ ରାଜ୍ୟସୁଖ ଭୋଗ କରିବା ପାଇଁ ଇଚ୍ଛା ନାହିଁ। ମୁଁ ବର୍ତ୍ତମାନ ତପଦ୍ୱାରା ପରଲୋକକୁ ଯିବାକୁ ଗ୍ରହୁଁଛି। ଏଣୁ ନିଜର ଦେଢ଼ଶୁର ଓ ଯାଆଙ୍କ ସେବାରେ ରହି ମୁଁ ନିଜର ଶେଷ ଜୀବନ ତପସ୍ୟାରେ ହିଁ କଟାଇବି। ତୁମ୍ଭେମାନେ ସୁଖପୂର୍ବକ ଘରକୁ ଫେରିଯାଅ ଏବଂ ଧର୍ମପୂର୍ବକ ପ୍ରଜାପାଳନ କରି ନିଜର ପରିଜନମାନଙ୍କୁ ସୁଖ ଦିଅ।’ ଏଇ ପ୍ରକାର ନିଜର ପୁତ୍ରମାନଙ୍କୁ ବୁଝାଇ-ସୁଝାଇ ଦେବୀ କୁନ୍ତୀ ନିଜର ଯାଆ-ଦେଢ଼ଶୁରଙ୍କ ସହିତ ବଣକୁ ଗ୍ରଲିଗଲେ ଏବଂ ଶେଷସମୟ ପର୍ଯ୍ୟନ୍ତ ସେବାରେ ରହି କୁନ୍ତୀ ଦେବୀ ସେମାନଙ୍କ ସହିତ ଦାବାଗ୍ନିରେ ଜଳି ଯୋଗୀମାନଙ୍କ ଭଳି ଶରୀର ତ୍ୟାଗ କଲେ। ଦେବୀ କୁନ୍ତୀଙ୍କ ପରି ଆଦର୍ଶ ମହିଳା ସଂସାରର ଇତିହାସରେ ବହୁତ କମ୍ ମିଳିବେ।



# ଦେବୀ ଦ୍ରୌପଦୀ

ଦେବୀ ଦ୍ରୌପଦୀ ପାଞ୍ଚାଳଦେଶର ରାଜା ଦ୍ରୁପଦଙ୍କର ଅଯୋନିଜା ପୁତ୍ରୀ ଥିଲେ । ତାଙ୍କର ଉତ୍ପତ୍ତି ଯଜ୍ଞବେଦୀରୁ ହୋଇଥିଲା । ଏହାଙ୍କର ରୂପ ଲାବଣ୍ୟ ଅନୁପମ ଥିଲା । ତାଙ୍କ ପରି ସୁନ୍ଦରୀ ସେ ସମୟରେ ପୃଥିବୀରେ କେହି ନ ଥିଲେ । ତାଙ୍କ ଶରୀରରୁ ସଦ୍ୟ ପ୍ରସ୍ଫୁଟିତ କମଳର ଗନ୍ଧ ବାହାରି ଏକ କୋଶ ପର୍ଯ୍ୟନ୍ତ ବ୍ୟାପି ଯାଉଥିଲା । ତାଙ୍କର ଜନ୍ମ ସମୟରେ ଆକାଶବାଣୀ ଦ୍ୱାରା କୁହା ଯାଇଥିଲା– 'ଦେବତାମାନଙ୍କ କାର୍ଯ୍ୟ ସିଦ୍ଧ କରିବା ପାଇଁ କ୍ଷତ୍ରିୟମାନଙ୍କୁ ସଂହାର କରିବା ଉଦ୍ଦେଶ୍ୟରେ ଏଇ ରମଣୀରତ୍ନଙ୍କର ଜନ୍ମ ହୋଇଛି । ତାଙ୍କରି କାରଣରୁ କୌରବମାନଙ୍କୁ ବଡ଼ ଭୟ ହେବ ।' କୃଷ୍ଣବର୍ଣ୍ଣ ହେବା କାରଣରୁ ଲୋକେ ତାଙ୍କୁ କୃଷ୍ଣା କହୁଥିଲେ । ପୂର୍ବଜନ୍ମରେ ଦିଆ ଯାଇଥିବା ଭଗବାନ୍ ଶଙ୍କରଙ୍କ ବରଦାନରେ ଏହାଙ୍କୁ ଏଇ ଜନ୍ମରେ ପାଞ୍ଚ ପତି ପ୍ରାପ୍ତ ହେଲେ । ଏକୁଟିଆ ଅର୍ଜୁନଙ୍କ ଦ୍ୱାରା ସ୍ୱୟଂବରରେ ଜୟ କଲେ ମଧ୍ୟ ମାତା କୁନ୍ତୀଙ୍କ ଆଜ୍ଞାରେ ଏହାଙ୍କର ପାଞ୍ଚ ଭାଇଙ୍କ ସହିତ ବିବାହ ହୋଇଥିଲା ।

ଦ୍ରୌପଦୀ ଉଚ୍ଚକୋଟୀର ପତିବ୍ରତା ଏବଂ ଭଗବଦ୍‌ଭକ୍ତା ଥିଲେ । ତାଙ୍କର ଭଗବାନ୍ ଶ୍ରୀକୃଷ୍ଣଙ୍କ ଚରଣରେ ଅବିଚଳ ପ୍ରୀତି ଥିଲା । ସେ ତାଙ୍କୁ ନିଜର ରକ୍ଷକ, ହିତୈଷୀ ଏବଂ ପରମ ଆତ୍ମୀୟ ତ ମାନୁଥିଲେ, ତାଙ୍କର ସର୍ବବ୍ୟାପକତା ଏବଂ ସର୍ବଶକ୍ତିମତ୍ତାରେ ମଧ୍ୟ ଏହାଙ୍କର ପୂର୍ଣ୍ଣ ବିଶ୍ୱାସ ଥିଲା । କୌରବଙ୍କ ସଭାରେ ଦୁଷ୍ଟ ଦୁଃଶାସନ ଏହାଙ୍କୁ ଉଲଗ୍ନ କରିବାକୁ ଇଚ୍ଛା କଲାବେଳେ ଏବଂ ସଭାସଦ୍‌ଙ୍କ ମଧ୍ୟରୁ ଏଇ ଅମାନୁଷିକ ଅତ୍ୟାଚାରକୁ ବନ୍ଦ କରିବା ପାଇଁ କାହାରି ସାହସ ନ ହେବାରୁ, ଦ୍ରୌପଦୀ ନିଜର ଲାଜ ରକ୍ଷା କରିବା ପାଇଁ ଅନ୍ୟ କିଛି ଉପାୟ ନ ଦେଖି ଅତ୍ୟନ୍ତ ଆତୁର ହୋଇ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ଡାକିଲେ–

**ଗୋବିନ୍ଦ ଦ୍ୱାରକାବାସିନ୍ କୃଷ୍ଣ ଗୋପୀଜନପ୍ରିୟ ।**
**କୌରବୈଃ ପରିଭୂତାଂ ମାଂ କିଂ ନ ଜାନାସି କେଶବ ॥**

ହେ ନାଥ ହେ ରମାନାଥ ବ୍ରଜନାଥାର୍ତ୍ତିନାଶନ ।
କୌରବାର୍ଣବମଗ୍ନାଂ ମାମୁଦ୍ଧରସ୍ୱ ଜନାର୍ଦ୍ଦନ ॥
କୃଷ୍ଣ କୃଷ୍ଣ ମହାଯୋଗିନ୍ ବିଶ୍ୱାତ୍ମନ୍ ବିଶ୍ୱଭାବନ ।
ପ୍ରପନ୍ନାଂ ପାହି ଗୋବିନ୍ଦ କୁରୁ ମଧ୍ୟେଽବସୀଦତୀମ୍ ॥*

(ମହା. ସଭା. ୬୮ । ୪୧-୪୩)

ଅନାବିଳ ହୃଦୟର କରୁଣ ଚିତ୍କାର ଭଗବାନ୍ ଖୁବ୍ ଶୀଘ୍ର ଶୁଣନ୍ତି । ଶ୍ରୀକୃଷ୍ଣ ସେହି ସମୟରେ ଦ୍ୱାରକାରେ ଥିଲେ, ସେଠାରୁ ସେ ଶୀଘ୍ର ଦୌଡ଼ି ଆସିଲେ ଏବଂ ଧର୍ମରୂପରେ ଦ୍ରୌପଦୀଙ୍କ ବସ୍ତ୍ରରେ ଛପି ରହି ତାଙ୍କର ଲାଜ ବଞ୍ଚାଇଲେ । ଭଗବାନଙ୍କ କୃପାରେ ଦ୍ରୌପଦୀଙ୍କ ଶାଢ଼ୀ ଅନନ୍ତଗୁଣ ବଢ଼ି ଗଲା । ଦୁଃଶାସନ ଯେତେ ଭିଡୁଥାଏ, ତାହା ସେତେ ସେତେ ବଢ଼ି ଯାଉଥାଏ । ଦେଖୁ ଦେଖୁ ସେଠାରେ ବସ୍ତ୍ର ଗଦା ହୋଇଗଲା । ମହାବଳୀ ଦୁଃଶାସନର ପ୍ରଚଣ୍ଡ ବାହୁ ଥକି ଗଲା; ପରନ୍ତୁ ଶାଢ଼ୀ ଶେଷ ହେଲା ନାହିଁ । ଉପସ୍ଥିତ ସମସ୍ତ ସମାଜ ଭଗବଦ୍‌ଭକ୍ତି ଓ ପାତିବ୍ରତ୍ୟର ଅଦ୍ଭୁତ ଚମତ୍କାରିତା ଦେଖିଲେ । ଶେଷରେ ଦୁଃଶାସନ ଲଜ୍ଜିତ ହୋଇ ବସି ପଡ଼ିଲା । ଭକ୍ତବତ୍ସଳ ପ୍ରଭୁ ନିଜ ଭକ୍ତର ଲାଜ ରଖିଦେଲେ । ଧନ୍ୟ ଭକ୍ତବତ୍ସଳତା!

ଦିନକର କଥା—ପାଣ୍ଡବମାନେ ଦ୍ରୌପଦୀଙ୍କ ସହିତ କାମ୍ୟକ ବନରେ ରହୁଥିବା ବେଳେ ଦୁର୍ଯ୍ୟୋଧନ ଦ୍ୱାରା ପଠାଯାଇଥିବା ମହର୍ଷି ଦୁର୍ବାସା ନିଜର ଦଶହଜାର ଶିଷ୍ୟଙ୍କୁ ସଙ୍ଗରେ ନେଇ ପାଣ୍ଡବଙ୍କ ନିକଟରେ

---

* "ହେ ଗୋବିନ୍ଦ ! ହେ ଦ୍ୱାରକାବାସୀ ! ହେ ସଚ୍ଚିଦାନନ୍ଦସ୍ୱରୂପ ପ୍ରେମଘନ! ହେ ଗୋପୀଜନବଲ୍ଲଭ! ହେ ସର୍ବଶକ୍ତିମାନ୍ ପ୍ରଭୋ! କୌରବମାନେ ମୋତେ ଅପମାନିତ କରୁଛନ୍ତି । ଏକଥା କ'ଣ ଆପଣଙ୍କୁ ଜଣାପଡୁ ନାହିଁ? ହେ ନାଥ! ହେ ରମାନାଥ! ହେ ବ୍ରଜନାଥ! ହେ ଆର୍ତ୍ତିନାଶନ ଜନାର୍ଦ୍ଦନ! ମୁଁ କୌରବଙ୍କ ସମୁଦ୍ରରେ ବୁଡ଼ି ଯାଉଅଛି । ଆପଣ ମୋତେ ଉଦ୍ଧାର କରନ୍ତୁ । ହେ କୃଷ୍ଣ! ଆପଣ ସଚ୍ଚିଦାନନ୍ଦସ୍ୱରୂପ ମହାଯୋଗୀ! ଆପଣ ସର୍ବସ୍ୱରୂପ ଏବଂ ସମସ୍ତଙ୍କର ଜୀବନଦାତା! ହେ ଗୋବିନ୍ଦ! ମୁଁ କୌରବମାନଙ୍କ ଦ୍ୱାରା ଘେରା ହୋଇ ବଡ଼ ସଙ୍କଟରେ ପଡ଼ି ଯାଇଛି! ଆପଣଙ୍କ ଶରଣ ନେଉଛି । ଆପଣ ମୋତେ ରକ୍ଷା କରନ୍ତୁ ।"

ପହଞ୍ଚିଲେ। ଦୁର୍ଯ୍ୟୋଧନ ଜାଣିଶୁଣି ସେମାନଙ୍କୁ ଏପରି ସମୟରେ ପଠାଇଥିଲେ, ଯେତେବେଳେ କି ପାଣ୍ଡବମାନେ ଭୋଜନ ଶେଷ କରି ବିଶ୍ରାମ ନେଉଥିଲେ। ମହାରାଜ ଯୁଧିଷ୍ଠିର ଅତିଥିସେବା ଉଦ୍ଦେଶ୍ୟରେ ହିଁ ଭଗବାନ୍ ସୂର୍ଯ୍ୟଦେବଙ୍କଠାରୁ ଏପରି ଏକ ଚମତ୍କାର ପାତ୍ର ପ୍ରାପ୍ତ କରିଥିଲେ, ଯେଉଁଥିରେ ରନ୍ଧା ଯାଇଥିବା ଅଳ୍ପ ଅନ୍ନ ଭୋଜନ ପଦାର୍ଥ ଅକ୍ଷୟ ହୋଇ ଯାଉଥିଲା। କିନ୍ତୁ ସେଥିରେ ସର୍ତ୍ତ ଏହା ଥିଲା ଯେ ଯେପର୍ଯ୍ୟନ୍ତ ଦ୍ରୌପଦୀ ଭୋଜନ କରି ନ ଥିବେ, ସେପର୍ଯ୍ୟନ୍ତ ସେଇ ପାତ୍ରରୁ ଅନ୍ନ ପରଷୁଥିଲେ ଯଥେଷ୍ଟ ଅନ୍ନ ଭୋଜନ ପ୍ରାପ୍ତ ହୋଇ ପାରୁଥିବ। ଯୁଧିଷ୍ଠିର ମହର୍ଷିଙ୍କୁ ଶିଷ୍ୟମଣ୍ଡଳୀ ସହିତ ଭୋଜନ ପାଇଁ ଆମନ୍ତ୍ରିତ କରିଦେଲେ ଏବଂ ମହର୍ଷି ଦୁର୍ବାସା ମଧ୍ୟାହ୍ନକାଳୀନ ସ୍ନାନସନ୍ଧ୍ୟାଦି ନିତ୍ୟକର୍ମ କରିବା ପାଇଁ ସମସ୍ତଙ୍କ ସଙ୍ଗରେ ଗଙ୍ଗାତଟକୁ ଚାଲିଗଲେ।

ଦୁର୍ବାସାଙ୍କ ସହିତ ଦଶହଜାର ଶିଷ୍ୟଙ୍କ ଏକ ମଣ୍ଡଳୀ ପୂରାପୂରି ବିଶ୍ୱବିଦ୍ୟାଳୟ ପରି ଚାଲୁଥିଲା। ଧର୍ମରାଜ ସେଇ ସମସ୍ତଙ୍କୁ ଭୋଜନ ପାଇଁ ଆମନ୍ତ୍ରଣ ତ ଦେଇଦେଲେ ଏବଂ ଋଷି ତାହାକୁ ମଧ୍ୟ ସ୍ୱୀକାର କରିନେଲେ; ପରନ୍ତୁ କେହି ଏଇ କଥାର ବିଚାର କରି ନ ଥିଲେ ଯେ ଦ୍ରୌପଦୀ ଭୋଜନ କରି ସାରିଛନ୍ତି, ଏଣୁ ସୂର୍ଯ୍ୟଙ୍କ ଦ୍ୱାରା ଦିଆଯାଇଥିବା ପାତ୍ରରୁ ଏମାନଙ୍କ ଭୋଜନ ବ୍ୟବସ୍ଥା ତ ହୋଇ ପାରିବ ନାହିଁ। ଦ୍ରୌପଦୀ ବଡ଼ ଚିନ୍ତାରେ ପଡ଼ିଗଲେ। ସେ ବିଚାର କଲେ—ଋଷି ଯଦି ବିନା ଭୋଜନରେ ଲେଉଟି ଯିବେ ତେବେ ଶାପ ନ ଦେଇ ରହି ପାରିବେ ନାହିଁ। ତାଙ୍କରି କ୍ରୋଧୀ ସ୍ୱଭାବ ଜଗଦ୍‌ବିଖ୍ୟାତ ଥିଲା। ଦ୍ରୌପଦୀଙ୍କୁ ଆଉ କୌଣସି ଉପାୟ ଦେଖା ଯାଇ ନ ଥିଲା। ତେଣୁ ସେ ମନେ ମନେ ଭକ୍ତଭୟଭଞ୍ଜନ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ସ୍ମରଣ କଲେ ଏବଂ ଏଇ ଆପତ୍ତିରୁ ଉଦ୍ଧାର ପାଇଁ ସେ ଏଇ ପ୍ରକାରେ ପ୍ରାର୍ଥନା କଲେ—

**କୃଷ୍ଣ କୃଷ୍ଣ ମହାବାହୋ ଦେବକୀନନ୍ଦନାବ୍ୟୟ ॥**
**ବାସୁଦେବ ଜଗନ୍ନାଥ ପ୍ରଣତାର୍ତ୍ତିବିନାଶନ ।**
**ବିଶ୍ୱାତ୍ମନ୍ ବିଶ୍ୱଜନକ ବିଶ୍ୱହର୍ତ୍ତଃ ପ୍ରଭୋଽବ୍ୟୟ ॥**

ପ୍ରପନ୍ନପାଳ ଗୋପାଳ ପ୍ରଜାପାଳ ପରାତ୍ପର ।
ଆକୂତୀନାଂ ଚ ଚିତ୍ତୀନାଂ ପ୍ରବର୍ତକ ନତାସ୍ମି ତେ ॥
ବରେଣ୍ୟ ବରଦାନନ୍ତ ଅଗତୀନାଂ ଗତିର୍ଭବ ।
ପୁରାଣପୁରୁଷ ପ୍ରାଣମନୋବୃତ୍ତ୍ୟାଦ୍ୟଗୋଚର ॥
ସର୍ବାଧ୍ୟକ୍ଷ ପରାଧ୍ୟକ୍ଷ ତ୍ୱାମହଂ ଶରଣଂ ଗତା ।
ପାହି ମାଂ କୃପୟା ଦେବ ଶରଣାଗତବତ୍ସଳ ॥
ନୀଳୋତ୍ପଳଦଳଶ୍ୟାମ ପଦ୍ମଗର୍ଭାରୁଣେକ୍ଷଣ ।
ପୀତାମ୍ବରପରୀଧାନ ଲସତ୍କୌସ୍ତୁଭଭୂଷଣ ॥
ତ୍ୱମାଦିରନ୍ତୋ ଭୂତାନାଂ ତ୍ୱମେବ ଚ ପରାୟଣମ୍ ।
ପରାତ୍ପରତରଂ ଜ୍ୟୋତିର୍ବିଶ୍ୱାତ୍ମା ସର୍ବତୋମୁଖଃ ॥
ତ୍ୱାମେବାହୁଃ ପରଂ ବୀଜଂ ନିଧାନଂ ସର୍ବସମ୍ପଦାମ୍ ।
ତ୍ୱୟା ନାଥେନ ଦେବେଶ ସର୍ବାପଦ୍‌ଭ୍ୟୋ ଭୟଂ ନ ହି ॥
ଦୁଃଶାସନାଦହଂ ପୂର୍ବଂ ସଭାୟାଂ ମୋଚିତା ଯଥା ।
ତଥୈବ ସଙ୍କଟାଦସ୍ମାନ୍ମାମୁଦ୍ଧର୍ତୁମିହାର୍ହସି ॥*

(ମହା. ବନ. ୨୬୩।୮-୧୬)

ଶ୍ରୀକୃଷ୍ଣ ତ ଘଟେ ଘଟେ ବିରାଜମାନ । ସେ ଖୁବ୍ ଶୀଘ୍ର ଆସି ପହଞ୍ଚିଗଲେ । ତାଙ୍କୁ ଦେଖିବାକ୍ଷଣି ଦ୍ରୌପଦୀଙ୍କ ପିଣ୍ଡରେ ପ୍ରାଣ ଆସିଗଲା, ବୁଡ଼ିଯାଉଥିବା ଲୋକକୁ ଆଶ୍ରୟ ମିଳିଗଲା । ଦ୍ରୌପଦୀ ସଂକ୍ଷେପରେ ତାଙ୍କୁ

* "ହେ ଶ୍ରୀକୃଷ୍ଣ! ହେ ମହାବାହୁ ଶ୍ରୀକୃଷ୍ଣ! ହେ ଦେବକୀନନ୍ଦନ! ହେ ଅବିନାଶୀ ବାସୁଦେବ! ଚରଣତଳେ ପଡ଼ିଥିବା ଦୁଃଖୀମାନଙ୍କର ଦୁଃଖହରଣକାରୀ ପରମେଶ୍ୱର! ତୁମେ ସମସ୍ତ ଜଗତର ଆତ୍ମା । ଏଇ ବିଶ୍ୱକୁ ତିଆରି କରିବା ଏବଂ ଧ୍ୱଂସ କରିବା ହିଁ ତୁମ ହାତର ଖେଳ । ପ୍ରଭୋ! ତୁମେ ଅବିନାଶୀ ଶରଣାଗତର ରକ୍ଷାକାରୀ ଗୋପାଳ! ତୁମେ ସକଳ ପ୍ରଜାଙ୍କ ରକ୍ଷକ ପରାତ୍ପର ପରମେଶ୍ୱର; ଚିତ୍ତବୃତ୍ତି ଏବଂ ଭାବର ପ୍ରବର୍ତ୍ତକ ଅଟ । ମୁଁ ତୁମକୁ ପ୍ରଣାମ କରୁଛି । ସମସ୍ତଙ୍କୁ ବରଣ କରିବା ଯୋଗ୍ୟ ବରଦାତା ଅନନ୍ତ! ଆସ; ଯେଉଁମାନଙ୍କୁ ସାହାଯ୍ୟ ଦେବାଲୋକ ତୁମ ବ୍ୟତୀତ ଆଉ କେହି ନାହିଁ, ସେହି ଅସହାୟ ଭକ୍ତମାନଙ୍କୁ ସହାୟତା କର । ପୁରାଣପୁରୁଷ! ପ୍ରାଣ ମନର ବୃତ୍ତିଗୁଡ଼ିକ ତୁମରି ପାଖପର୍ଯ୍ୟନ୍ତ ପହଞ୍ଚି ପାରିବ ନାହିଁ । ସମସ୍ତଙ୍କର ସାକ୍ଷୀ ପରମୋତ୍କୃଷ୍ଟ ଦେବ! ମୁଁ ତୁମର ଶରଣରେ ଆସିଛି! ଶରଣାଗତବତ୍ସଳ! କୃପାକରି

ସବୁକଥା ଶୁଣାଇଦେଲେ । ଶ୍ରୀକୃଷ୍ଣ ଅଧୀରତା ପ୍ରଦର୍ଶନ କରି କହିଲେ– 'ଆରେ ସବୁକଥା ପଛେ ହେବ, ପ୍ରଥମେ ମୋତେ ଶୀଘ୍ର କିଛି ଖାଇବାକୁ ଦିଅ । ମୋତେ ବଡ଼ ଭୋକ ଲାଗୁଛି । ତୁମେ କ'ଣ ଜାଣନା ଯେ ମୁଁ କେତେ ଦୂରରୁ ଆସି କ୍ଳାନ୍ତ ହୋଇଗଲିଣି ।' ଦ୍ରୌପଦୀ ଲାଜରେ କିଂକର୍ତ୍ତବ୍ୟବିମୂଢ଼ ହୋଇଗଲେ । ସେ ରହି ରହି କହିଲେ–'ପ୍ରଭୋ! ମୁଁ ଏବେ ଖାଇସାରି ଉଠିଛି । ଏବେ ତ ଅକ୍ଷୟ ପାତ୍ରରେ କିଛି ହେଲେ ବଞ୍ଚି ନାହିଁ ।' ଶ୍ରୀକୃଷ୍ଣ କହିଲେ–'ମୋତେ ଟିକିଏ ସେଇ ଅକ୍ଷୟ ପାତ୍ରକୁ ଦେଖାଇଲ!' କୃଷ୍ଣା ଅକ୍ଷୟ ପାତ୍ରକୁ ନେଇ ଆସିଲେ । ଶ୍ରୀକୃଷ୍ଣ ତାହାକୁ ହାତକୁ ନେଇ ଦେଖିଲେ ଯେ ତାର ଫନ୍ଦରେ ଶାଗ-ପତ୍ର ଖଣ୍ଡିଏ ଲାଗିଯାଇଥିବାର ମିଳିଲା । ତାହାକୁ ଶ୍ରୀକୃଷ୍ଣ ମୁଖରେ ପକାଇଦେଇ କହିଲେ– 'ଏଇ ଶାଗପତ୍ର ଖଣ୍ଡକଦ୍ୱାରା ସକଳ ଜଗତର ଆତ୍ମା ଯଜ୍ଞଭୋକ୍ତା ପରମେଶ୍ୱର ତୃପ୍ତ ହୋଇ ଯାଆନ୍ତୁ ।' ଏହାପରେ ସେ ସହଦେବଙ୍କୁ କହିଲେ– 'ଭାଇ! ଏବେ ତୁମେ ମୁନୀଶ୍ୱରମାନଙ୍କୁ ଭୋଜନ ପାଇଁ ଡାକି ଆଣ ।' ସହଦେବ ଗଙ୍ଗାତଟକୁ ଯାଇ ଦେଖିଲେ ତ ସେଠାରେ ଦେଖିବାକୁ କେହି ମିଳିଲେ ନାହିଁ । କଥା ଏହି ଯେ ଶ୍ରୀକୃଷ୍ଣ ଯେଉଁ ସମୟରେ ଶାଗପତ୍ର ଖଣ୍ଡିକ ପାଟିରେ ପକାଇ ଦେଇ ସେହି ସଙ୍କଳ୍ପ ପଢ଼ିଲେ, ସେହି ସମୟରେ ମୁନୀଶ୍ୱରମାନେ ଜଳରେ ଠିଆ ହୋଇ ମନ୍ତ୍ର ଜପ କରୁଥିଲେ । ସେମାନଙ୍କୁ ଅକସ୍ମାତ୍ ଏପରି ଜଣାଗଲା ଯେ ସେମାନଙ୍କ ପେଟ ଗଳାପର୍ଯ୍ୟନ୍ତ ପୂରି ଯାଇଛି । ସେମାନେ ପରସ୍ପର ଜଣେ ଅନ୍ୟକୁ ଦେଖିଲେ ଏବଂ କହିଲେ

---

ମୋତେ ରକ୍ଷା କର । ନୀଳକମଳସଦୃଶ ଶ୍ୟାମସୁନ୍ଦର! କମଳପୁଷ୍ପ ଭିତର ଭାଗ ପରି କିଞ୍ଚିତ୍ ଲାଲ ନେତ୍ରଧାରୀ! କୌସ୍ତୁଭମଣିବିଭୂଷିତ ଏବଂ ପୀତାମ୍ବର ଧାରଣକାରୀ! ଶ୍ରୀକୃଷ୍ଣ! ତୁମେ ସକଳ ଭୂତଙ୍କର ଆଦି ଓ ଅନ୍ତ ଅଟ, ତୁମେ ହିଁ ପରମ ଆଶ୍ରୟ! ତୁମେ ପରାତ୍ପର, ଜ୍ୟୋତିର୍ମୟ, ସର୍ବବ୍ୟାପକ ଏବଂ ସର୍ବାତ୍ମା । ଜ୍ଞାନୀ ପୁରୁଷମାନେ ତୁମକୁ ଏଇ ଜଗତର ପରମ ବୀଜ ଓ ସକଳ ସମ୍ପଦମାନଙ୍କର ଅଧିଷ୍ଠାନ ବୋଲି କହନ୍ତି । ଦେବେଶ! ତୁମେ ଯେତେବେଳେ ମୋର ରକ୍ଷକ, ତେବେ ସମସ୍ତ ବିପତ୍ତି ଆସି ପଡ଼ିଗଲେ ମଧ୍ୟ ମୋର ଭୟ ନାହିଁ । ପୂର୍ବରୁ ଦୁଃଶାସନ ହାତରୁ ଯେପରି ରକ୍ଷା କରିଥିଲ, ସେପରି ବର୍ତ୍ତମାନ ଏଇ ସଂକଟରୁ ଉଦ୍ଧାର କର ।"

ଯେ 'ଏବେ ଆମେ ସେଠାକୁ ଯାଇ କ'ଣ ଖାଇବା?' ଦୁର୍ବାସା ଚୁପ୍‌ଚାପ ପଳାଇଯିବାକୁ ଉଚିତ ମନେ କଲେ; କାରଣ ସେ ଜାଣିଥିଲେ ଯେ ପାଣ୍ଡବମାନେ ଭଗବଭକ୍ତ ଏବଂ ଅମ୍ବରୀଷଙ୍କ ନିକଟରେ ଯାହା କିଛି ଘଟିଥିଲା ତାହାପରେ ତାଙ୍କୁ ଭଗବଭକ୍ତମାନଙ୍କ ଭୟ ବେଶୀ ଥିଲା । ବାସ୍, ସେଠାରୁ ସବୁ ଲୋକ ଚୁପ୍‌ଚାପ ପଳାଇଗଲେ । ସେଠାରେ ରହୁଥିବା ତପସ୍ୱୀମାନଙ୍କ ଠାରୁ ସମସ୍ତେ ଚାଲି ଯାଇଥିବାର ଖବର ସହଦେବ ଜାଣିପାରିଲେ ଏବଂ ସେ ଲେଉଟି ସବୁ କଥା ଧର୍ମରାଜଙ୍କୁ କହି ଶୁଣାଇ ଦେଲେ । ଏଇ ପ୍ରକାର ଦ୍ରୌପଦୀ ଶ୍ରୀକୃଷ୍ଣଭକ୍ତିଦ୍ୱାରା ପାଣ୍ଡବମାନଙ୍କୁ ଗୋଟିଏ ବଡ଼ ବିପଦରୁ ରକ୍ଷା କରିଦେଲେ । ଶ୍ରୀକୃଷ୍ଣ ଆସି ଏମାନଙ୍କୁ ଦୁର୍ବାସାଙ୍କ କୋପରୁ ରକ୍ଷା କରିଦେଲେ ଏବଂ ନିଜର ଶରଣାଗତ ବତ୍ସଳତାର ପରିଚୟ ଦେଲେ ।

ଥରେ ବଣରେ ଭଗବାନ୍ ଶ୍ରୀକୃଷ୍ଣ ଦେବୀ ସତ୍ୟଭାମାଙ୍କ ସହିତ ପାଣ୍ଡବମାନଙ୍କ ସହିତ ଭେଟ ହେବାକୁ ଆସିଲେ । ସେହି ସମୟରେ କଥା ହେଉ ହେଉ ସତ୍ୟଭାମା ଦ୍ରୌପଦୀଙ୍କୁ ପଚାରିଲେ– "ଭଉଣୀ! ମୁଁ ତୁମକୁ ଗୋଟିଏ କଥା ପଚାରୁଛି । ମୁଁ ଦେଖୁଛି ଯେ ତୁମ ଶୂରବୀର ଏବଂ ବଳବାନ୍ ପତି ସର୍ବଦା ତୁମର ଅଧୀନ ରହିଛନ୍ତି, ଏହାର କାରଣ କ'ଣ? କ'ଣ ତୁମେ କିଛି ଯନ୍ତ୍ର-ମନ୍ତ୍ର ବା ଔଷଧ ଜାଣିଛ କି? ଅଥବା ତୁମେ ଜପ, ତପ, ବ୍ରତ, ହୋମ ଅଥବା ବିଦ୍ୟାରେ ଏମାନଙ୍କୁ ବଶ କରି ରଖିଛ କି? ମୋତେ ଏପରି କିଛି ଉପାୟ ବତାଇଦିଅ, ଯେପରି ଭଗବାନ୍ ଶ୍ୟାମସୁନ୍ଦର ମୋ ବଶ ହୋଇଯିବେ ।" ଦେବୀ ଦ୍ରୌପଦୀ କହିଲେ– "ଭଉଣୀ! ତୁମର ଏ ପ୍ରକାର ଶଙ୍କା କରିବା ଉଚିତ ନୁହେଁ, କାରଣ ତୁମେ ବୁଦ୍ଧିମତୀ ଓ ଶ୍ରୀକୃଷ୍ଣଙ୍କ ପାଟରାଣୀ । ଯଦି ପତିଙ୍କୁ ଏହା ଜଣା ପଡ଼ିଯିବ ଯେ ପତ୍ନୀ ତାଙ୍କୁ ବଶରେ ରଖିବା ପାଇଁ କୌଣସି ମନ୍ତ୍ର-ତନ୍ତ୍ରର ପ୍ରୟୋଗ କରୁଛି, ତେବେ ସେ ସର୍ପ ପ୍ରବେଶ କରିଥିବା ଗୃହପରି ତାହାଠାରୁ ଦୂରରେ ରହନ୍ତି । ଏଣୁ ମନ୍ତ୍ର-ତନ୍ତ୍ରରେ କେବେ ମଧ୍ୟ ପତି ନିଜ ପତ୍ନୀର ବଶ ହୋଇ ପାରନ୍ତି ନାହିଁ । ଏହାର ବିପରୀତ, ଏହାଦ୍ୱାରା କେତେ ପ୍ରକାରର ଅନର୍ଥ

ହୋଇଯାଏ । ଏଥିଯୋଗୁଁ ସ୍ତ୍ରୀ କେବେ କୌଣସି ପ୍ରକାର ନିଜର ପତିଙ୍କୁ ଅପ୍ରିୟ କରିବା ଅନୁଚିତ ।

ଏହାପରେ ସେ କହିଲେ ଯେ ନିଜ ପତିମାନଙ୍କୁ ପ୍ରସନ୍ନ ରଖିବା ପାଇଁ କି ପ୍ରକାର ଆଚରଣ କରୁଥିଲେ । ଦ୍ରୌପଦୀ କହିଲେ, ଭଉଣୀ! ମୁଁ କାମ-କ୍ରୋଧ-ଅହଙ୍କାର ତ୍ୟାଗ କରି ବଡ଼ ସାବଧାନତାର ସହିତ ସମସ୍ତ ପାଣ୍ଡବଙ୍କର ଏବଂ ସେମାନଙ୍କ ସ୍ତ୍ରୀମାନଙ୍କୁ ସେବା କରୁଛି । ମୁଁ ଈର୍ଷ୍ୟାରୁ ଦୂରରେ ରହିଛି ଏବଂ ମନକୁ ବଶରେ ରଖି କେବଳ ସେବା ଇଚ୍ଛାରେ ନିଜ ପତିମାନଙ୍କର ମନ ରଖିଛି । ମୁଁ କଟୁକଥାରୁ ଦୂରରେ ରହେ, ଅସଭ୍ୟତାରୁ ଦୂରରେ ରହେ, କପଟ କଥା ଉପରେ ଦୃଷ୍ଟି ଦିଏ ନାହିଁ, ଖରାପ ଜାଗାରେ ବସେ ନାହିଁ, ଦୂଷିତ ଆଚରଣ ପାଖ ମାଡ଼େ ନାହିଁ ତଥା ପତିମାନଙ୍କର ଅଭିପ୍ରାୟପୂର୍ଣ୍ଣ ସଙ୍କେତକୁ ଅନୁସରଣ କରେ । ଦେବତା, ମନୁଷ୍ୟ, ଗନ୍ଧର୍ବ, ଯୁବକ, ଧନୀ ଅଥବା ରୂପବାନ୍—କୌଣସି ପ୍ରକାର ପୁରୁଷ ହେଉ ନା କାହିଁକି, ମୋର ମନ ପାଣ୍ଡବମାନଙ୍କ ବ୍ୟତୀତ ଆଉ କୁଆଡ଼େ ଯାଏ ନାହିଁ । ନିଜ ପତିମାନଙ୍କୁ ଭୋଜନ ନ କରାଇ ମୁଁ ଭୋଜନ କରେ ନାହିଁ, ସ୍ନାନ ନ କରିବା ପର୍ଯ୍ୟନ୍ତ ସ୍ନାନ କରେ ନାହିଁ ଏବଂ ନ ବସିବା ପର୍ଯ୍ୟନ୍ତ ନିଜେ ବସେ ନାହିଁ । ମୋର ପତିମାନେ ଘରକୁ ଆସିବା ବେଳେ ମୁଁ ଠିଆ ହୋଇ ସେମାନଙ୍କୁ ଆସନ ଓ ଜଳ ଦିଏ । ମୁଁ ଘରର ବାସନକୁସନ ମାଜି ଧୋଇ ସଫା ରଖେ, ମଧୁର ରୋଷାଇ ପ୍ରସ୍ତୁତ କରେ ଏବଂ ଯଥାସମୟରେ ଭୋଜନ ଦିଏ । ଘରେ ସର୍ବଦା ସଜାଗ ରହେ, ଘରର ଶସ୍ୟ ରକ୍ଷା କରେ ଏବଂ ଘରକୁ ଝାଡ଼ିଝୁଡ଼ି ସଫା ରଖେ । ମୁଁ କଥାବାର୍ତ୍ତାରେ କାହାରିକୁ ତିରସ୍କାର କରେ ନାହିଁ, କୁଳଟା ସ୍ତ୍ରୀଙ୍କ ପାଖ ମାଡ଼େ ନାହିଁ ଏବଂ ସର୍ବଦା ପତିମାନଙ୍କର ଅନୁକୂଳ ରହି ଆଳସ୍ୟଠାରୁ ଦୂରରେ ରହେ । ମୁଁ ଦୁଆର ପାଖରେ ବାରମ୍ବାର ଯାଇ ଠିଆ ହୁଏ ନାହିଁ ତଥା ଖୋଲା ଅଥବା ମଇଳା ପକାଇବା ସ୍ଥାନରେ ମଧ୍ୟ ଅଧିକ ସମୟ ରହେ ନାହିଁ, କିନ୍ତୁ ସର୍ବଦା ସତ୍ୟ ଭାଷଣ ଓ ପତିସେବାରେ ତତ୍ପର

ରହେ । ପତିଦେବଙ୍କ ବ୍ୟତୀତ ଏକୁଟିଆ ରହିବାକୁ ମୁଁ ପସନ୍ଦ କରେ ନାହିଁ । ଯଦି କୌଟୁମ୍ବିକ କିଛି କାର୍ଯ୍ୟରେ ପତିଦେବ ବାହାରକୁ ଚାଲିଯାଆନ୍ତି ତେବେ ମୁଁ ପୁଷ୍ପ ଓ ଚନ୍ଦନ ଆଦି ଛାଡ଼ି ବ୍ରତ ଓ ନିୟମ ପାଳନ କରି ସମୟ କଟାଏ । ମୋର ପତି ଯେଉଁ ଖାଦ୍ୟ ଖାଆନ୍ତି ନାହିଁ, ପିଅନ୍ତି ନାହିଁ, ଅଥବା ସେବନ କରନ୍ତି ନାହିଁ, ମୁଁ ମଧ୍ୟ ତାହାଠାରୁ ଦୂରରେ ରହେ । ସ୍ତ୍ରୀମାନଙ୍କ ପାଇଁ ଶାସ୍ତ୍ର ଯେଉଁ ଯେଉଁ କଥା ବତାଇଛି, ସେ ସବୁକୁ ମୁଁ ପାଳନ କରେ । ଶରୀରକୁ ଯଥା ପ୍ରାପ୍ତ ବସ୍ତ୍ରାଳଙ୍କାରଦ୍ୱାରା ସୁସଜ୍ଜିତ ରଖେ ତଥା ସର୍ବଦା ସାବଧାନ ରହି ପତିଦେବଙ୍କ ପ୍ରିୟ କାର୍ଯ୍ୟ କରିବାରେ ତତ୍ପର ରହେ ।

ଶାଶୁ ମୋତେ କୁଟୁମ୍ବ ସମ୍ବନ୍ଧୀୟ ଯେଉଁ ଯେଉଁ ଧର୍ମ କଥା ବତାଇଛନ୍ତି, ସେ ସବୁକୁ ମୁଁ  ପାଳନ କରେ । ଭିକ୍ଷା ଦେବା, ପୂଜା, ଶ୍ରାଦ୍ଧ, ପର୍ବପର୍ବାଣିରେ ବିଭିନ୍ନ ଜିନିଷ ତିଆରି କରିବା, ମାନନୀୟମାନଙ୍କୁ ଆଦର କରିବା ଏବଂ ମୋ ପାଇଁ ଯେଉଁ ଯେଉଁ ଧର୍ମ ବିହିତ, ସେଇ ସବୁକୁ ମୁଁ ରାତିଦିନ ସାବଧାନତା ସହିତ ଆଚରଣ କରେ; ମୁଁ ବିନୟ ଏବଂ ନିୟମମାନଙ୍କୁ ସର୍ବଦା ସବୁ ପ୍ରକାରେ ପାଳନ କରେ । ମୋ ବିଚାରରେ ତ ସ୍ତ୍ରୀମାନଙ୍କର ସନାତନ ଧର୍ମ ପତିଙ୍କ ଅଧୀନ ରହିବା, ସେହି ତାଙ୍କର ଇଷ୍ଟଦେବ! ମୁଁ ନିଜ ପତିମାନଙ୍କଠାରୁ ଅଧିକ ହୋଇ ରହେ ନାହିଁ, ତାଙ୍କଠାରୁ ବଢ଼ିଆ ଭୋଜନ କରେ ନାହିଁ, ତାଙ୍କଠାରୁ ଦାମିକା ବସ୍ତ୍ରଭୂଷଣ ପିନ୍ଧେ ନାହିଁ ଏବଂ କେବେ ଶାଶୁଙ୍କ ସହିତ ବାଦବିବାଦ କରେ ନାହିଁ ତଥା ସର୍ବଦା ସଂଯମ ପାଳନ କରେ । ମୁଁ ସର୍ବଦା ନିଜ ପତିମାନଙ୍କଠାରୁ ପ୍ରଥମେ ଉଠେ ତଥା ବଡ଼ ଓ ବୁଢ଼ାମାନଙ୍କର ସେବାରେ ଲାଗିରହେ । ନିଜର ଶାଶୁଙ୍କୁ ମୁଁ ଭୋଜନ, ବସ୍ତ୍ର ଓ ଜଳ ଆଦିରେ ସର୍ବଦା ସେବା କରେ । ବସ୍ତ୍ର, ଆଭୂଷଣ ଓ ଭୋଜନାଦିରେ ମୁଁ କେବେ ତାଙ୍କ ଅପେକ୍ଷା ନିଜ ପାଇଁ ଅଧିକ କରେ ନାହିଁ । ପ୍ରଥମେ ମହାରାଜ ଯୁଧିଷ୍ଠିରଙ୍କର ଦଶ ହଜାର ଦାସୀ ଥିଲେ । ମୋତେ ସେମାନଙ୍କ ନାମ, ରୂପ, ବସ୍ତ୍ର ଆଦି ସବୁର ଠିକଣା ରହୁଥିଲା

ଏବଂ ଏଇ କଥାର ମଧ୍ୟ ଧ୍ୟାନ ରହୁଥିଲା ଯେ କାହାଦ୍ୱାରା କି କାମ କରି ହେବ ଏବଂ କ'ଣ କରି ହେବ ନାହିଁ। ଯେଉଁ ସମୟରେ ଇନ୍ଦ୍ରପ୍ରସ୍ଥରେ ରହି ଯୁଧିଷ୍ଠିର ମହାରାଜ ପୃଥ୍ୱୀପାଳନ କରୁଥିଲେ, ସେ ସମୟରେ ତାଙ୍କ ସହିତ ଏକ ଲକ୍ଷ ଘୋଡ଼ା ଏବଂ ସେତିକି ହାତୀ ଚାଲୁଥିଲେ। ଏମାନଙ୍କ ଗଣନା ଓ ପ୍ରବନ୍ଧ ମୁଁ ହିଁ କରୁଥିଲି ଏବଂ ମୁଁ ମଧ୍ୟ ସେମାନଙ୍କ ଆବଶ୍ୟକତା କଥା ଶୁଣୁଥିଲି। ଅନ୍ତଃପୁରର ଗୋପାଳ ଓ ମେଣ୍ଢାରଖୁଆଳଠାରୁ ନେଇ ସବୁ ସେବକଙ୍କର କାମଦାମ ଦେଖାରଖା ମୁଁ କରୁଥିଲି।

'ମହାରାଜାଙ୍କର ଯାହା କିଛି ଆୟବ୍ୟୟ ଓ ସଞ୍ଚିତ ବା ବଳକା ହେଉଥାଏ, ସେ ସବୁର ବିବରଣ ମୁଁ ଏକୁଟିଆ ରଖୁଥିଲି। ପାଣ୍ଡବମାନେ କୁଟୁମ୍ବର ସମସ୍ତ ଭାର ମୋ ଉପରେ ଛାଡ଼ି ଦେଇ ପୂଜାପାଠରେ ଲାଗି ରହୁଥିଲେ ଏବଂ ଯିବା ଆସିବା ଲୋକଙ୍କର ସ୍ୱାଗତସତ୍କାର କରୁଥିଲେ; ଏବଂ ମୁଁ ସବୁ ପ୍ରକାର ସୁଖ ଛାଡ଼ି ସେସବୁ ସମ୍ଭାଳୁ ଥିଲି। ମୋର ପତିମାନଙ୍କର ଯେଉଁ ଅକ୍ଷୟ ଭଣ୍ଡାର ଥିଲା, ତାହାର ଖବର ମୋତେ ଏକୁଟିଆ ଜଣାଥିଲା। ମୁଁ ଭୋକଶୋଷ ସହି ରାତିଦିନ ପାଣ୍ଡବଙ୍କ ସେବାରେ ଲାଗି ରହେ। ସେହି ସମୟରେ ମୋ ପାଇଁ ରାତି ଓ ଦିନ ସମାନ ଥିଲା। ମୁଁ ସର୍ବଦା ସର୍ବପ୍ରଥମେ ଉଠୁଥିଲି ଏବଂ ସମସ୍ତଙ୍କ ପରେ ଶୋଉଥିଲି। ସତ୍ୟଭାମା! ପତିମାନଙ୍କୁ ଅନୁକୂଳ କରିବା ପାଇଁ ଏଇ ଉପାୟ ହିଁ ମୋତେ ଜଣା।'

ଜଣେ ଆଦର୍ଶ ଗୃହପତ୍ନୀ ଘରେ କି ପ୍ରକାର ରହିବା ଉଚିତ–ଏହାର ଶିକ୍ଷା ଆମେ ଦ୍ରୌପଦୀଙ୍କ ଜୀବନରୁ ଗ୍ରହଣ କରିବା ଉଚିତ।

× × ×

ଦେବୀ ଦ୍ରୌପଦୀଙ୍କଠାରେ କ୍ଷତ୍ରିୟୋଚିତ ତେଜ ଏବଂ ଭକ୍ତୋଚିତ କ୍ଷମା–ଦୁହିଁଙ୍କର ଅଭୂତପୂର୍ବ ସମନ୍ୱୟ ଥିଲା। ସେ ବଡ଼ ବୁଦ୍ଧିମତୀ ଓ ବିଦୁଷୀ ଥିଲେ। ଏହାଙ୍କର ତ୍ୟାଗ ମଧ୍ୟ ଅଦ୍ଭୁତ ଥିଲା। ଏହାଙ୍କର ପାତିବ୍ରତ୍ୟକୁ ସମସ୍ତେ ଲୁହା ପରି ମାନୁଥିଲେ। ଏହାଙ୍କୁ ଦୁଷ୍ଟ ଦୁଃଶାସନ କେଶ ଧରି ସଭାମଧ୍ୟକୁ ଟାଣି ଟାଣି ଆଣିଲା, ସେହି ସମୟରେ ସେ ତାହାକୁ ଧମକ

ଦେଇ ନିଜର ପତିମାନଙ୍କର କୋପର ଭୟ ଦେଖାଇ ଥିଲେ ଏବଂ ସମସ୍ତ ସଭାସଦଙ୍କୁ ଧିକ୍କାର କରି ଦ୍ରୋଣ, ଭୀଷ୍ମ ଏବଂ ବିଦୁରଙ୍କ ପରି ଗୁରୁଜନମାନଙ୍କୁ ମଧ୍ୟ ସେମାନଙ୍କ ଚୁପ୍ ରହିବା ପାଇଁ ଭର୍ତ୍ସନା କରିଥିଲେ। ସେ ସାହସପୂର୍ବକ ସଭାସଦମାନଙ୍କୁ ଆହ୍ୱାନ କରି ସେମାନଙ୍କଠାରୁ ନ୍ୟାୟ ପାଇବା ପାଇଁ ଯୁକ୍ତି କରିଥିଲେ ଏବଂ ଧର୍ମର ରାଣ ପକାଇ ଏହା ପଚ୍ଚାରିଥିଲେ 'ଯେବେ ମହାରାଜା ଯୁଧିଷ୍ଠିର ନିଜକୁ ହାରି ଯାଇ ମୋତେ ବାଜିରେ ଲଗାଇଲେ, ଏଇ ଅବସ୍ଥାରେ ମୋତେ ବାଜିରେ ଲଗାଇବା ଅଧିକାର ତାଙ୍କର ଥିଲା କି ନାହିଁ?' ସମସ୍ତ ସଭାସଦ୍ ଚୁପ୍ ହୋଇଗଲେ। କେହି ଦ୍ରୌପଦୀଙ୍କର ଏଇ ପ୍ରଶ୍ନର ଉତ୍ତର ଦେଇ ପାରିଲେ ନାହିଁ। ଶେଷରେ ଦୁର୍ଯ୍ୟୋଧନର ଭାଇ ବିକର୍ଣ୍ଣ ଉଠି ସମସ୍ତଙ୍କୁ ଦ୍ରୌପଦୀଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଏବଂ ମୌନ ଭଙ୍ଗ କରିବାକୁ ଅନୁରୋଧ କଲେ ଏବଂ ନିଜପକ୍ଷରୁ ଏଇ ସମ୍ମତି ପ୍ରକଟ କଲେ ଯେ 'ପ୍ରଥମେ ତ ଦ୍ରୌପଦୀ ପାଞ୍ଚଭାଇଙ୍କ ସ୍ତ୍ରୀ ଅଟନ୍ତି, ଏଣୁ ଏକୁଟିଆ ଯୁଧିଷ୍ଠିର ଏହାଙ୍କୁ ବାଜିରେ ଲଗାଇବାର କୌଣସି ଅଧିକାର ନ ଥିଲା। ଦ୍ୱିତୀୟରେ, ସେ ନିଜକୁ ହାରିବା ପରେ ଦ୍ରୌପଦୀଙ୍କୁ ବାଜିରେ ଲଗାଇଥିଲେ, ଏଣୁ ମଧ୍ୟ ଏହା ତାଙ୍କର ଅନଧିକାର ଚେଷ୍ଟା ବୋଲି ବୁଝାଯିବ।' ବିକର୍ଣ୍ଣଙ୍କ କଥା ଶୁଣି ବିଦୁର ଏହାର ସମର୍ଥନ କଲେ ଏବଂ ଅନ୍ୟ ସଭାସଦମାନେ ମଧ୍ୟ ତାଙ୍କର ପ୍ରଶଂସା କଲେ। ପରନ୍ତୁ କର୍ଣ୍ଣ ଧମକ ଦେଇ ବଳପୂର୍ବକ ତାଙ୍କୁ ବସାଇ ଦେଲେ। ଏହି ପ୍ରକାର ପୂର୍ଣ୍ଣସଭାରେ ଦୁଃଶାସନ ଦ୍ୱାରା ଟଣା ହେବା ଏବଂ ଅପମାନିତ ହେବା ପରେ ମଧ୍ୟ ଦ୍ରୌପଦୀଙ୍କ ନୈତିକ ବିଜୟ ହୋଇଥିଲା। ଏହାଙ୍କର ବୁଦ୍ଧି ସମସ୍ତଙ୍କ ଉପରେ ରହିଲା। କେହି ତାଙ୍କର କଥାକୁ ଖଣ୍ଡନ କରି ପାରିଲେ ନାହିଁ। ଶେଷରେ ବିଦୁର ବୁଝାଇବା ପରେ ଧୃତରାଷ୍ଟ୍ର ଦୁର୍ଯ୍ୟୋଧନକୁ ଗାଳି ଦେଇଥିଲେ ଏବଂ ଦ୍ରୌପଦୀଙ୍କୁ ପ୍ରସନ୍ନ କରିବା ପାଇଁ ବର ମାଗିବା ପାଇଁ କହିଥିଲେ। ସେ ବରଦାନ ରୂପରେ ଧୃତରାଷ୍ଟ୍ରଙ୍କୁ କେବଳ ଏତିକି ମାଗିଲେ ଯେ 'ମୋର ପାଞ୍ଚପତିଙ୍କୁ ଦାସତ୍ୱରୁ ମୁକ୍ତ କରି ଦିଅନ୍ତୁ।' ଧୃତରାଷ୍ଟ୍ର କହିଲେ–

'ପୁତ୍ରୀ! ଆହୁରି କିଛି ମାଗିନେ।' ସେହି ସମୟରେ ଦ୍ରୌପଦୀ ତାଙ୍କୁ ଯେଉଁ ଉତ୍ତର ଦେଇଥିଲେ, ତାହା ସର୍ବଦା ଦ୍ରୌପଦୀଙ୍କ ଅନୁରୂପ ଥିଲା। ତାହାଦ୍ୱାରା ତାଙ୍କର ନିର୍ଲୋଭତା ଏବଂ ଧର୍ମପ୍ରେମ ସ୍ପଷ୍ଟ ଝଲକି ଯାଉଥିଲା। ସେ କହିଲେ–'ମହାରାଜ! ଅଧିକ ଲୋଭ କରିବା ଠିକ୍ ନୁହେଁ। ଆଉ କିଛି ମାଗିବା ପାଇଁ ମୋର ଆଦୌ ଇଚ୍ଛା ନାହିଁ। ମୋର ପତିମାନେ ସ୍ୱୟଂ ସମର୍ଥ। ଏବେ ଯେତେବେଳେ ଦାସତ୍ୱରୁ ମୁକ୍ତ ହେବେ ତେବେ ବାକି ସବୁ କିଛି ସେମାନେ କରିଦେବେ।' ଏଇ ପ୍ରକାର ଦ୍ରୌପଦୀ ନିଜର ବୁଦ୍ଧିମତ୍ତା ଏବଂ ପାତିବ୍ରତ୍ୟ ବଳରେ ନିଜର ପତିମାନଙ୍କୁ ଦାସତ୍ୱରୁ ମୁକ୍ତ କରି ଦେଇଥିଲେ।

ଦ୍ରୌପଦୀଙ୍କର ଯେଉଁ ଲମ୍ବ ଲମ୍ବ କଳା କେଶକୁ କିଛି ଦିନ ପୂର୍ବରୁ ରାଜସୂୟଯଜ୍ଞରେ ଅବଭୃଥସ୍ନାନ ସମୟରେ ମନ୍ତ୍ରପୂତ ଜଳରେ ଅଭିଷେକ କରା ଯାଇଥିଲା, ସେହି କେଶକୁ ଦୁଷ୍ଟ ଦୁଃଶାସନ ଦ୍ୱାରା ପରିପୂର୍ଣ୍ଣ ସଭାରେ ଟଣା ହେବା କଥାକୁ ଦ୍ରୌପଦୀ କେବେ ଭୁଲି ନ ଥିଲେ। ସେହି ଅଭୂତପୂର୍ବ ଅପମାନର ଅଗ୍ନି ତାଙ୍କ ହୃଦୟରେ ସର୍ବଦା ଜଳୁଥିଲା, ଏଣୁ ଯେତେ ଥର ଏହାଙ୍କ ସମ୍ମୁଖରେ କୌରବମାନଙ୍କ ସହିତ ସନ୍ଧି କରିବା ପ୍ରସ୍ତାବ ଆସିଲା, ସବୁବେଳେ ସେ ତାହାର ବିରୋଧ କରିଥିଲେ ଏବଂ ବରାବର ନିଜ ଅପମାନ ସ୍ମରଣ କରାଇ ଦେଇ ନିଜ ସ୍ୱାମୀମାନଙ୍କୁ ଯୁଦ୍ଧ ପାଇଁ ପ୍ରୋତ୍ସାହିତ କରୁଥିଲେ। ଶେଷରେ ଏହା ସ୍ଥିର ହେଲା ଯେ ଥରେ କୌରବମାନଙ୍କୁ ବୁଝାଇସୁଝାଇ ଦେଖିବାକୁ ହେବ। ଯେବେ ଭଗବାନ୍ ଶ୍ରୀକୃଷ୍ଣ ପାଣ୍ଡବମାନଙ୍କ ପକ୍ଷରୁ ସନ୍ଧିପ୍ରସ୍ତାବ ନେଇ ହସ୍ତିନାପୁର ଯିବାକୁ ବାହାରିଲେ ସେହି ସମୟରେ ମଧ୍ୟ ସେ ନିଜର ଅପମାନ କଥା ଭୁଲି ନ ଥିଲେ ଏବଂ ଲମ୍ବ ଲମ୍ବ କେଶକୁ ହାତରେ ଧରି ଶ୍ରୀକୃଷ୍ଣଙ୍କୁ କହିଲେ–'ଶ୍ରୀକୃଷ୍ଣ! ତୁମେ ସନ୍ଧି କରିବାକୁ ଯାଉଛ, ତାହା ତ ଠିକ୍। ପରନ୍ତୁ ତୁମେ ମୋର କେଶକୁ ଭୁଲିବ ନାହିଁ।' ସେ ଏପର୍ଯ୍ୟନ୍ତ କହିଲେ ଯେ 'ଯଦି ପାଣ୍ଡବମାନଙ୍କର ଯୁଦ୍ଧ କରିବାକୁ ଇଚ୍ଛା ନାହିଁ ତେବେ କିଛି କଥା ନାହିଁ; ନିଜର ମହାରଥୀ ପୁତ୍ରମାନଙ୍କ

ସହିତ ମୋର ବୃଦ୍ଧ ପିତା କୌରବମାନଙ୍କ ସହ ସଂଗ୍ରାମ କରିବେ ତଥା ଅଭିମନ୍ୟୁ ସହିତ ମୋର ପାଞ୍ଚବଳୀପୁତ୍ର ଏମାନଙ୍କ ସହିତ ଯୁଦ୍ଧ କରିବେ ।'

କାମ୍ୟକ ବନରେ ଦୁଷ୍ଟ ଜୟଦ୍ରଥ ଦ୍ରୌପଦୀଙ୍କୁ ବଳପୂର୍ବକ ନେଇଯିବା ପାଇଁ ଚେଷ୍ଟା କରିବା ବେଳେ ସେ ତାହାକୁ ଏତେ ଜୋରରେ ଧକ୍କା ଦେଇଥିଲେ ଯେ ସେ କଟାଗଛ ପରି ଭୂମିରେ ପଡ଼ି ଯାଇଥିଲା । କିନ୍ତୁ ସେ ଶୀଘ୍ର ନିଜକୁ ସମ୍ଭାଳି ନେଇ ଛିଡ଼ା ହୋଇଗଲା ଏବଂ ତାହାଙ୍କୁ ବଳପୂର୍ବକ ରଥରେ ବସାଇ ନେଇଗଲା । ପଛରେ ଭୀମ ଓ ଅର୍ଜୁନ ତାକୁ ଧରି ଆଣିବା ବେଳେ ତାହାର ଯଥେଷ୍ଟ ଦଣ୍ଡ ହୋଇ ସାରିଥିଲା, ତେଣୁ ସେ ଦୟାପୂର୍ବକ ତାକୁ ଛାଡ଼ି ଦେଇଥିଲେ । ଏହି ପ୍ରକାର ଦ୍ରୌପଦୀ କ୍ରୋଧ ସଙ୍ଗେ ସଙ୍ଗେ କ୍ଷମା କରିବା ମଧ୍ୟ ଜାଣିଥିଲେ । ତାଙ୍କର ପାତିବ୍ରତ୍ୟତେଜ ତ ଅପୂର୍ବ ଥିଲା । ଯେ କେହି ଏହାଙ୍କ ସହିତ ଅସଦ୍‌ବ୍ୟବହାର ଅଥବା ଦୁଷ୍ଟତା କଲେ, ତାଙ୍କୁ ପ୍ରାଣାନ୍ତକ ଦଶା ଭୋଗିବାକୁ ପଡୁଥିଲା । ଦୁର୍ଯ୍ୟୋଧନ, ଦୁଃଶାସନ, କର୍ଣ୍ଣ, ଜୟଦ୍ରଥ, କୀଚକ ଆଦି ସମସ୍ତଙ୍କର ଏଇ ଦଶା ହୋଇଥିଲା । ନିର୍ଦୋଷ ପତିବ୍ରତା ପୀଡ଼ିତା ନାରୀର ବ୍ୟଥାରେ କୌରବ-ମାନଙ୍କର ଯେଉଁ ସର୍ବନାଶ ହେଲା, ତାହାର ମୂଳ ସତୀ ଦ୍ରୌପଦୀଙ୍କର ଅପମାନ ହିଁ ଥିଲା ।



# ପତିଭକ୍ତା ଗାନ୍ଧାରୀ

ସଂସାରର ପତିବ୍ରତା ଦେବୀମାନଙ୍କ ମଧ୍ୟରେ ଗାନ୍ଧାରୀଙ୍କ ସ୍ଥାନ ବହୁତ ଉଚ୍ଚରେ । ସେ ଗାନ୍ଧାରରାଜ ସୁବଳଙ୍କ କନ୍ୟା ଓ ଶକୁନୀ ଭଉଣୀ ଥିଲେ । ସେ କୁମାରୀଅବସ୍ଥାରେ ହିଁ ଭଗବାନ୍ ଶଙ୍କରଙ୍କୁ ବଡ଼ ଆରାଧନା କରିଥିଲେ ଏବଂ ତାଙ୍କଠାରୁ ଶହେପୁତ୍ର ବରଦାନ ପ୍ରାପ୍ତ କରିଥିଲେ । ତାଙ୍କୁ ଯେତେବେଳେ ଜଣା ପଡ଼ିଲା ଯେ ତାହାଙ୍କ ବିବାହ ନେତ୍ରହୀନ ଧୃତରାଷ୍ଟ୍ରଙ୍କ ସହିତ ହେବ, ସେହି ସମୟରୁ ସେ ନିଜର ଦୁଇ ଆଖିରେ ପଟି ବାନ୍ଧି ଦେଇଥିଲେ । ସେ ବିଗ୍ଚର କଲେ ଯେବେ ମୋର ସ୍ୱାମୀ ନେତ୍ର ସୁଖରୁ ବଞ୍ଚିତ, ତେବେ ମୋର ସଂସାରକୁ ଦେଖିବାରେ କି ଅଧିକାର ଅଛି? ସେହି ସମୟରୁ ସେ ଆଜୀବନ ନିଜର ଏଇ ଦୃଢ଼ ପ୍ରତିଜ୍ଞାରେ ଅଟଳ ରହିଲେ । ସ୍ୱାମୀଙ୍କ ପାଇଁ ଇନ୍ଦ୍ରିୟସୁଖ ତ୍ୟାଗର ଏପରି ଅସାଧାରଣ ଉଦାହରଣ ସଂସାରର ଇତିହାସରେ ଆଉ କେଉଁଠି ମିଳେ ନାହିଁ । ତାଙ୍କର ଏଇ ତପ ଓ ତ୍ୟାଗ ଅନୁପମ ଥିଲା, ସଂସାର ପାଇଁ ଏହା ଏକ ଅପୂର୍ବ ବସ୍ତୁ ଥିଲା । ସେ ସର୍ବଦା ନିଜ ପତିଙ୍କର ଅନୁକୂଳ ଥିଲେ । ସେ ଶ୍ୱଶୁରାଳୟକୁ ଆସିବା ମାତ୍ରେ ନିଜ ଚରିତ୍ର ଓ ସଦ୍‌ଗୁଣ ଦ୍ୱାରା ସ୍ୱାମୀ ଏବଂ ସମସ୍ତ ପରିବାରକୁ ମୁଗ୍ଧ କରି ଦେଇଥିଲେ । ଧନ୍ୟ ପତିପ୍ରେମ!

ଦେବୀ ଗାନ୍ଧାରୀ ଯେପରି ପତିବ୍ରତା ଥିଲେ ସେପରି ନିର୍ଭୀକ ଓ ନ୍ୟାୟପ୍ରିୟ ଥିଲେ । ସେ ସର୍ବଦା ସତ୍ୟ, ନୀତି ଓ ଧର୍ମର ହିଁ ପକ୍ଷପାତ କରୁଥିଲେ, ଅନ୍ୟାୟକୁ କେବେ ସମର୍ଥନ କରୁ ନ ଥିଲେ । ତାଙ୍କ ପୁତ୍ରମାନେ ପୂର୍ଣ୍ଣ ସଭାରେ ଦେବୀ ଦ୍ରୌପଦୀଙ୍କ ସହିତ ଯେଉଁ ଅତ୍ୟାଗ୍ଚର କରିଥିଲେ, ତାହା ଏହାଙ୍କୁ ବଡ଼ ଦୁଃଖ ଦେଇଥିଲା । ସେ ଏଇ କଥାରେ ନିଜ ପୁତ୍ରମାନଙ୍କ ଉପରେ ସନ୍ତୁଷ୍ଟ ନ ଥିଲେ । ତାଙ୍କର ପତି ରାଜା ଧୃତରାଷ୍ଟ୍ର ପୁଣି ପୁତ୍ରଙ୍କ କଥାରେ ପଡ଼ି ଦ୍ୱିତୀୟ ଥର ପାଣ୍ଡବମାନଙ୍କୁ ଜୁଆ ପାଇଁ ଡକାଇ ପଠାଇବା

ବେଳେ, ସେ ବଡ଼ ଦୁଃଖିତ ହେଲେ । ସେ ଜୁଆକୁ ବିରୋଧ କରି ନିଜ ପତିଦେବଙ୍କୁ କହିଲେ–"ସ୍ୱାମିନ୍! ଦୁର୍ଯ୍ୟୋଧନ ଜନ୍ମ ସମୟରେ ଶୃଗାଳଙ୍କ ପରି ଚିତ୍କାର କରିଥିଲା । ଏଣୁ ସେଇ ସମୟରେ ପରମଜ୍ଞାନୀ ବିଦୁର କହିଥିଲେ ଯେ ଏଇ ପୁତ୍ରକୁ ପରିତ୍ୟାଗ କରିଦିଅ । ଏଇ କଥାକୁ ସ୍ମରଣ କରି ମୋତେ ଜଣା ପଡୁଛି ଯେ ସେ କୁରୁବଂଶକୁ ନାଶ କରି ଛାଡ଼ିବ । ହେ ଆର୍ଯ୍ୟପୁତ୍ର! ଆପଣ ନିଜ ଦୋଷରୁ ସମସ୍ତଙ୍କୁ ବିପତ୍ତିରେ ପକାନ୍ତୁ ନାହିଁ । ସେଇ ଅପଦାର୍ଥ ମୂର୍ଖର କଥାରେ ହଁ-ହାଁ ମାରନ୍ତୁ ନାହିଁ । ଏଇ ବଂଶନାଶର କାରଣ ହୁଅନ୍ତୁ ନାହିଁ । ବନ୍ଧା ହୋଇଥିବା ବନ୍ଧକୁ ଭାଙ୍ଗନ୍ତୁ ନାହିଁ । ଲିଭିଯାଇଥିବା ନିଆଁ ପୁଣି ହୁ-ହୁ ହୋଇ ଜଳି ଉଠିବ । ପାଣ୍ଡବମାନେ ଶାନ୍ତ ଏବଂ ବୈର-ବିରୋଧରୁ ବିମୁଖ ଅଟନ୍ତି । ଏମାନଙ୍କୁ ଏବେ କ୍ରୋଧିତ କରିବା ଠିକ୍ ନୁହେଁ । ଯଦ୍ୟପି ଏ କଥା ଆପଣ ଜାଣନ୍ତି, ପୁଣି ମଧ୍ୟ ମୁଁ ଆପଣଙ୍କୁ ସ୍ମରଣ କରାଇ ଦେଉଛି । ଦୁର୍ବୁଦ୍ଧି ପୁରୁଷର ଚିତ୍ତ ଉପରେ ଶାସ୍ତ୍ର ଉପଦେଶର ପ୍ରଭାବ ପଡ଼େ ନାହିଁ । ପରନ୍ତୁ ଆପଣ ବୃଦ୍ଧ ହୋଇ ବାଳକଙ୍କ ପରି କଥା କହୁଛନ୍ତି–ଏହା ଅନୁଚିତ । ଏଇ ସମୟରେ ଆପଣ ନିଜର ପୁତ୍ରତୁଲ୍ୟ ପାଣ୍ଡବଙ୍କୁ ନିଜର କରି ରଖନ୍ତୁ । ଯେପରି ଏମାନେ ଦୁଃଖୀ ହୋଇ ଆପଣଙ୍କ ଠାରୁ ଅଲଗା ହୋଇ ନ ଯାନ୍ତି । କୁଳକଳଙ୍କ ଦୁର୍ଯ୍ୟୋଧନକୁ ତ୍ୟାଗ କରି ଦେବା ହିଁ ଶ୍ରେୟସ୍କର । ମୁଁ ମୋହବଶତଃ ସେହି ସମୟରେ ବିଦୁରଙ୍କ କଥା ମାନି ନ ଥିଲି, ତାହାରି ଫଳ ଏହାହିଁ ଅଟେ । ଶାନ୍ତି, ଧର୍ମ ଓ ମନ୍ତ୍ରୀମାନଙ୍କ ସମ୍ମତିରେ ନିଜ ବିଗ୍ରହ ଶକ୍ତିକୁ ସୁରକ୍ଷିତ ରଖନ୍ତୁ । ଭୁଲ କଦାପି କରନ୍ତୁ ନାହିଁ । ବିନା ବିଗ୍ରହରେ କାମ କରିବା ହିଁ ଆପଣଙ୍କ ପକ୍ଷେ ଦୁଃଖଦାୟକ ରୂପେ ସିଦ୍ଧ ହେବ, ରାଜ୍ୟଲକ୍ଷ୍ମୀ କ୍ରୂରର ହାତରେ ପଡ଼ି ତାହାର ସର୍ବନାଶ କରି ଦିଅନ୍ତି ।" ଗାନ୍ଧାରୀଙ୍କର ଏହି ବାକ୍ୟମାନଙ୍କରୁ ଧର୍ମ, ନୀତି ଓ ନିଷ୍ପକ୍ଷତା ଫୁଟି ଉଠୁଛି । ସେ ଦୁର୍ଯ୍ୟୋଧନକୁ ମଧ୍ୟ ତାହାର ଅନୁଚିତ କାର୍ଯ୍ୟରେ ବରାବର ବାଧା ଦେଉଥିଲେ, ତାହାର ଉଦ୍ଦଣ୍ଡତା ପାଇଁ ତାହାକୁ ଗାଳି ଦେଉଥିଲେ ଏବଂ ତାହାର ଅନୀତିର ଭାବୀ

ଦୁଷ୍ପରିଣାମର ଭୟଙ୍କର ଚିତ୍ର ତାହା ଆଗରେ ଆଙ୍କି ଦେଉଥିଲେ । କିନ୍ତୁ ତା ମୁଣ୍ଡ ଉପରେ ତ କାଳ ନାଚୁଥିଲା । ସେ ତାହାକୁ ଏହି ସବୁ ହିତପୂର୍ଣ୍ଣ କଥା ଆଡ଼କୁ ଦୃଷ୍ଟିପାତ କରାଇ ଦେଉ ନ ଥିଲା ।

ପାଣ୍ଡବମାନଙ୍କ ପକ୍ଷରୁ ସନ୍ଧି ପ୍ରସ୍ତାବ ନେଇ ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣ ହସ୍ତିନାପୁରକୁ ଗଲେ ଏବଂ ସେ ମଧ୍ୟ ଦୁର୍ଯ୍ୟୋଧନକୁ ବୁଝାଇ ବୁଝାଇ ହାରି ଗଲେ । ସେତିକିବେଳେ ଧୃତରାଷ୍ଟ୍ର ଦେବୀ ଗାନ୍ଧାରୀଙ୍କୁ ଡକାଇ କହିଲେ ଯେ 'ଏବେ ତୁମେ ନିଜ ପୁତ୍ରକୁ ବୁଝାଅ, ସେ ଆମ୍ଭମାନଙ୍କର କାହାରି କଥା ତ ଶୁଣୁ ନାହିଁ ।' ପତିଙ୍କର ଏହି କଥା ଶୁଣି ଗାନ୍ଧାରୀ କହିଲେ–'ହେ ରାଜନ୍! ଆପଣ ପୁତ୍ରମୋହରେ ପଡ଼ି ଯାଇଛନ୍ତି, ଏଣୁ ଏଇ ବିଷୟରେ ସବୁଠାରୁ ଅଧିକ ଦୋଷୀ ଆପଣ ହିଁ ଅଟନ୍ତି । ଆପଣ ଜାଣିଛନ୍ତି ଯେ ଦୁର୍ଯ୍ୟୋଧନ ବଡ଼ ପାପୀ, ତଥାପି ଆପଣ ତାରି ବୁଦ୍ଧିରେ ଚାଲୁଛନ୍ତି । ଦୁର୍ଯ୍ୟୋଧନ ତ କାମ, କ୍ରୋଧ ଓ ଲୋଭର ମାୟାଜାଲରେ ପଡ଼ିଯାଇଛି । ଏବେ ଆପଣ ବଳପୂର୍ବକ ଚାହିଁଲେ ବି ତାହାକୁ ଏଇ ବାଟରୁ ହଟାଇ ପାରିବେ ନାହିଁ । ଆପଣ ଏଇ ମୂର୍ଖ, ଦୁରାତ୍ମା, କୁସଙ୍ଗୀ ଓ ଲୋଭୀ ପୁତ୍ରକୁ କିଛି ବୁଝାସୁଝା ନ କରି ରାଜ୍ୟର ନିୟନ୍ତ୍ରଣଭାର ସମର୍ପି ଦେଲେ; ତାହାରି ଫଳ ବର୍ତ୍ତମାନ ଭୋଗ କରୁଛନ୍ତି । ଆପଣଙ୍କ ନିଜର ଯାହା କିଛି ବିଭେଦ ରହିଛି, ତାହାକୁ ଉପେକ୍ଷା କରି ଚାଲି ଯାଉଛନ୍ତି । ଏପରି କରି ତ ଆପଣ ପାଣ୍ଡବଙ୍କ ଦୃଷ୍ଟିରେ ନିଜେ ନିଜକୁ ହାସ୍ୟାସ୍ପଦ କରୁଛନ୍ତି । ଦେଖନ୍ତୁ, ଯଦି ସାମ ବା ଭେଦଦ୍ୱାରା ବିପତ୍ତିକୁ ଏଡ଼ାଇ ଦିଆଯାଇ ପାରେ ତେବେ କେହି ବି ବୁଦ୍ଧିମାନ୍ ବ୍ୟକ୍ତି ସ୍ୱଜନଙ୍କ ପ୍ରତି ଦଣ୍ଡ କାହିଁକି ପ୍ରୟୋଗ କରିବେ?' ଗାନ୍ଧାରୀଙ୍କ ଏଇ ଯୁକ୍ତି କିପରି ନିର୍ଭୀକ, ନିଷ୍ପକ୍ଷ, ହିତପୂର୍ଣ୍ଣ, ନୀତିପୂର୍ଣ୍ଣ ଓ ପବିତ୍ର ଥିଲା ।

ଏହାପରେ ଗାନ୍ଧାରୀ ନିଜ ପୁତ୍ରକୁ ମଧ୍ୟ ଡକାଇ ତାଙ୍କୁ ବୁଝାଇବା ଆରମ୍ଭ କଲେ । ସେ କହିଲେ–'ପୁତ୍ର! ମୋ କଥା ଶୁଣ । ତୁମକୁ ତୁମର ପିତା, ଭୀଷ୍ମ, ଦ୍ରୋଣାଚାର୍ଯ୍ୟ, କୃପାଚାର୍ଯ୍ୟ ଓ ବିଦୁର ଯେଉଁ କଥା କହିଛନ୍ତି,

ତାହା ସ୍ୱୀକାର କରି ନିଅ। ଯଦି ତୁମେ ପାଣ୍ଡବଙ୍କ ସହିତ ସନ୍ଧି କରିବ ତେବେ ସତ୍ୟ ବୋଲି ମନେକର–ଏହାଦ୍ୱାରା ପିତାମହ ଭୀଷ୍ମ, ତୁମର ପିତା, ମୋର ଏବଂ ଦ୍ରୋଣାଚାର୍ଯ୍ୟ ଆଦି ତୁମର ହିତୈଷୀମାନଙ୍କର ବଡ଼ ସେବା ହେବ। ପୁତ୍ର! ରାଜ୍ୟ ପାଇବା, ତାହାକୁ ରକ୍ଷା କରିବା ଏବଂ ଭୋଗ କରିବା ନିଜ ହାତର କଥା ନୁହେଁ। ଯେଉଁ ପୁରୁଷ ଜିତେନ୍ଦ୍ରିୟ ହୁଅନ୍ତି, ସେହିଁ ରାଜ୍ୟକୁ ରକ୍ଷା କରି ପାରନ୍ତି। କାମ ଓ କ୍ରୋଧ ତ ମନୁଷ୍ୟକୁ ଅର୍ଥରୁ ଚ୍ୟୁତ କରି ଦିଏ। ଏଇ ଦୁଇ ଶତ୍ରୁଙ୍କୁ ଜିତି ପାରିଲେ ତ ରାଜା ସାରା ପୃଥ୍ୱୀକୁ ଜିତି ପାରିବେ। ଦେଖ–ଯେଉଁ ପ୍ରକାର ଉଦଣ୍ଡ ଘୋଡ଼ା ବାଟରେ ମୂର୍ଖ ସାରଥିକୁ ମାରି ପକାଏ, ସେଇ ପ୍ରକାର ଇନ୍ଦ୍ରିୟମାନଙ୍କୁ ଯଦି ନିୟନ୍ତ୍ରଣରେ ରଖା ନ ଯାଏ ତେବେ ସେମାନେ ମନୁଷ୍ୟକୁ ନାଶ କରି ଦେଇ ପାରନ୍ତି। ଏଇ ପ୍ରକାର ଇନ୍ଦ୍ରିୟମାନେ ଯାହାଙ୍କ ବଶରେ ଅଛନ୍ତି ଏବଂ ଯେ ସମସ୍ତ କାମ ବୁଝିବିଚାରି କରନ୍ତି, ତାଙ୍କ ପାଖରେ ଚିରକାଳ ପର୍ଯ୍ୟନ୍ତ ଲକ୍ଷ୍ମୀ ନିବାସ କରନ୍ତି। ବାବା! ତୁମର ପିତାମହ ଭୀଷ୍ମ ଏବଂ ଗୁରୁ ଦ୍ରୋଣାଚାର୍ଯ୍ୟ ଯେଉଁ କଥା କହୁଛନ୍ତି, ତାହା ସମ୍ପୂର୍ଣ୍ଣତଃ ଠିକ୍। ବାସ୍ତବରେ ଶ୍ରୀକୃଷ୍ଣ ଓ ଅର୍ଜୁନଙ୍କୁ କେହି ଜିତି ପାରିବେ ନାହିଁ। ଏଣୁ ତୁମେ ଶ୍ରୀକୃଷ୍ଣଙ୍କ ଶରଣ ନିଅ। ଯଦି ସେ ପ୍ରସନ୍ନ ହେବେ ତେବେ ଦୁଇ ପକ୍ଷର ହିତ ହେବ। ବତ୍ସ! ଯୁଦ୍ଧ କଲେ କାହାର କଲ୍ୟାଣ ହେବ ନାହିଁ। ସେଥିରେ ଧର୍ମ ଓ ଅର୍ଥ ମଧ୍ୟ ନାହିଁ, ପୁଣି ସୁଖ କେଉଁଠୁ ହେବ? ଯଦି ତୁମେ ନିଜ ମନ୍ତ୍ରୀମାନଙ୍କ ସହିତ ରାଜ୍ୟ ଭୋଗ କରିବାକୁ ଚାହୁଁଛ ତେବେ ପାଣ୍ଡବମାନଙ୍କର ଯାହା ନ୍ୟାୟୋଚିତ ଭାଗ, ତାହା ସେମାନଙ୍କୁ ଦେଇଦିଅ। ପାଣ୍ଡବମାନଙ୍କୁ ତେରବର୍ଷ ପର୍ଯ୍ୟନ୍ତ ଘରଠାରୁ ବାହାରେ ରଖାଯିବା ଦ୍ୱାରା ମଧ୍ୟ ବଡ଼ ଅପରାଧ ହୋଇଛି। ଏବେ ସନ୍ଧି କରି ଏହାକୁ ମାର୍ଜନା କରି ଦିଅ। ବାବା! ସଂସାରରେ ଲୋଭ କଲେ କାହାରିକୁ ସମ୍ପତ୍ତି ମିଳେ ନାହିଁ। ଏଣୁ ତୁମେ ଲୋଭ ଛାଡ଼ି ଦିଅ ଏବଂ ପାଣ୍ଡବମାନଙ୍କ ସହିତ ସନ୍ଧି କରି ନିଅ।' କିପରି ହିତପୂର୍ଣ୍ଣ ଏବଂ ମାର୍ମିକ

ଉପଦେଶ ଥିଲା । ଏଥିରୁ ଜଣାଯାଏ ଯେ ଗାନ୍ଧାରୀ ବିଦୁଷୀ ଥିଲେ ତଥା ସେ ଶ୍ରୀକୃଷ୍ଣ ଓ ଅର୍ଜୁନଙ୍କ ମହିମା ମଧ୍ୟ ଜାଣିଥିଲେ ।

ଦୁଷ୍ଟ ଦୁର୍ଯ୍ୟୋଧନ ଉପରେ ଗାନ୍ଧାରୀଙ୍କ ଏହି ଉତ୍ତମ ଉପଦେଶ କିଛି ପ୍ରଭାବ ପକାଇ ନ ଥିଲା । ସେ ନିଜର ଜିଦ୍ ଛାଡ଼ି ନ ଥିଲେ । ପରିଣାମ ଏପରି ହେଲା ଯେ ଦୁଇପକ୍ଷରୁ ଯୁଦ୍ଧ ପ୍ରସ୍ତୁତି ହେବାକୁ ଲାଗିଲା ଏବଂ ଅଠର ଦିନ ପର୍ଯ୍ୟନ୍ତ କୁରୁକ୍ଷେତ୍ର ପ୍ରାନ୍ତରରେ ଭୀଷଣ ହାଣକାଟ ହେଲା । ଯୁଦ୍ଧ ଦିନମାନଙ୍କରେ ଦୁର୍ଯ୍ୟୋଧନ ପ୍ରତିଦିନ ତାଙ୍କୁ ପ୍ରାର୍ଥନା କରୁଥିଲା ଯେ 'ମାଆ! ମୁଁ ଶତ୍ରୁମାନଙ୍କ ସହିତ ଯୁଦ୍ଧ କରିବାକୁ ଯାଉଛି; ଆପଣ ମୋତେ ଆଶୀର୍ବାଦ ଦିଅନ୍ତୁ, ଯେପରି ଯୁଦ୍ଧରେ ମୋର କଲ୍ୟାଣ ହେବ ।' ଗାନ୍ଧାରୀଙ୍କର ପାତିବ୍ରତ୍ୟର ତେଜ ବଡ଼ ପ୍ରଖର ଥିଲା । ସେ ଯଦି ପୁତ୍ରକୁ ବିଜୟର ଆଶୀର୍ବାଦ ଦେଇ ଦିଅନ୍ତି ତେବେ ତାହା ଅନ୍ୟଥା ହେବ ନାହିଁ । ପରନ୍ତୁ ସେ କିପରି ଦେବେ? ସେ ଜାଣିଥିଲେ ଯେ ଦୁର୍ଯ୍ୟୋଧନ ଅତ୍ୟାଗ୍ଚାରୀ । ଅତ୍ୟାଗ୍ଚାରୀ ହାତରେ କେବେହେଲେ ରାଜ୍ୟଲକ୍ଷ୍ମୀ ସ୍ଥିର ହୋଇ ରହି ପାରେ ନାହିଁ; ଏଥିପାଇଁ ସେ ପ୍ରତ୍ୟେକ ଥର ଏଇ ଉତ୍ତର ଦେଉଥିଲେ–'ପୁତ୍ର! ଯେଉଁଠାରେ ଧର୍ମ ସେଠାରେ ବିଜୟ । ବିଜୟ ଇଚ୍ଛା କଲେ ଧର୍ମର ପକ୍ଷ ନିଅ, ଅଧର୍ମ ପରିତ୍ୟାଗ କର ।' ସେ ଦୁର୍ଯ୍ୟୋଧନର ପକ୍ଷ କେବେ ନେଉ ନ ଥିଲେ । ପରନ୍ତୁ ସେ ଯେତେବେଳେ ଶୁଣିଲେ ଯେ ମୋର ଶହେକୁ ଶହେ ପୁତ୍ର ମରିଗଲେ ସେତେବେଳେ ଶୋକ ବେଗରେ ତାଙ୍କର କ୍ରୋଧ ଉଚ୍ଛୁଳି ପଡ଼ିଥିଲା ଏବଂ ସେ ପାଣ୍ଡବମାନଙ୍କୁ ଶାପ ଦେବାକୁ ବିଗ୍ଚର କରିବାକୁ ଲାଗିଲେ । ଭଗବାନ୍ ବେଦବ୍ୟାସ ତ ତାଙ୍କର ମନ କଥା ଜାଣି ପାରିଥିଲେ । ତାଙ୍କୁ ଯେତେବେଳେ ଏଇ ଖବର ମିଳିଗଲା ସେତିକିବେଳେ ସେ ଗାନ୍ଧାରୀଙ୍କ ପାଖକୁ ଆସି ତାଙ୍କୁ ସାନ୍ତ୍ୱନା ଦେଲେ ଏବଂ ତାଙ୍କର ଅସତ୍ୟ ସଂକଳ୍ପକୁ ରୋଧ କରି ଦେଲେ । ସେହି ସମୟରେ ପାଣ୍ଡବମାନେ ମଧ୍ୟ ସେଠାରେ ଉପସ୍ଥିତ ଥିଲେ । ମାତା ଗାନ୍ଧାରୀଙ୍କ ମନରେ କ୍ଷୋଭ ଦେଖି ଯୁଧିଷ୍ଠିର ତାଙ୍କ ପାଖକୁ ଗଲେ ଏବଂ ନିଜକୁ ଧିକ୍କାର କରି

ଯେତେବେଳେ ତାଙ୍କ ଚରଣତଳେ ପଡ଼ିଗଲେ ସେତିକିବେଳେ ଗାନ୍ଧାରୀଙ୍କ କ୍ରୋଧଭରା ଦୃଷ୍ଟି ପଟି ଦେଇ ମହାରାଜ ଯୁଧିଷ୍ଠିରଙ୍କ ନଖ ଉପରେ ପଡ଼ିଲା । ଏହାଦ୍ୱାରା ତାଙ୍କର ସୁନ୍ଦର ଲାଲ ଲାଲ ନଖ ସେଇ ସମୟରେ କଳା ପଡ଼ିଗଲା । ଏହା ଦେଖି ଅର୍ଜୁନ ତ ଶ୍ରୀକୃଷ୍ଣଙ୍କ ପଛକୁ ଖସିଗଲେ ତଥା ଅନ୍ୟ ଭାଇମାନେ ଭୟରେ ଏଣେତେଣେ ଛପି ଗଲେ । ସେମାନଙ୍କୁ ଏଇ ପ୍ରକାର ଅସ୍ଥିର ହେବାର ଦେଖି ଗାନ୍ଧାରୀଙ୍କ କ୍ରୋଧ ଶାନ୍ତ ହୋଇଗଲା ଏବଂ ସେ ମାତାଙ୍କ ପରି ପାଣ୍ଡବମାନଙ୍କୁ ଧୈର୍ଯ୍ୟ ଦେଲେ । ଉପର୍ଯ୍ୟୁକ୍ତ ଘଟଣାରୁ ଗାନ୍ଧାରୀଙ୍କ ଅନୁପମ ପାତିବ୍ରତ୍ୟ ତେଜର ସୂଚନା ମିଳେ । ଶେଷରେ ଗାନ୍ଧାରୀ ନିଜର କ୍ରୋଧ ଶ୍ରୀକୃଷ୍ଣଙ୍କ ଉପରେ ଦେଖାଇଲେ । ପକ୍ଷାନ୍ତରରେ ଏହା ମଧ୍ୟ କୁହାଯାଇପାରେ ଯେ ଅନ୍ତର୍ଯ୍ୟାମୀ ଶ୍ରୀକୃଷ୍ଣ ହିଁ ତାଙ୍କର ବୁଦ୍ଧିକୁ ବଦଳାଇ ଦେଇ ପାଣ୍ଡବମାନଙ୍କୁ ତାଙ୍କ କୋପରୁ ବଞ୍ଚାଇ ଦେଲେ ଏବଂ ତାଙ୍କ ଅଭିଶାପକୁ ନିଜ ଉପରକୁ ନେଇ ଆସିଲେ । ଦେବୀ ଗାନ୍ଧାରୀ କୁରୁକ୍ଷେତ୍ରକୁ ଯାଇ ଯେତେବେଳେ ସେଠାକାର ହୃଦୟବିଦାରକ ଦୃଶ୍ୟ ଦେଖିଲେ, ସେତେବେଳେ ସେ ତାଙ୍କର କ୍ରୋଧକୁ ସମ୍ଭାଳି ପାରିଲେ ନାହିଁ । କ୍ରୋଧରେ ଶ୍ରୀକୃଷ୍ଣଙ୍କୁ କହିଲେ–'କୃଷ୍ଣ ! ପାଣ୍ଡବ ଓ କୌରବ ନିଜର ବିଭାଜନ ପାଇଁ ନଷ୍ଟ ହୋଇଗଲେ; କିନ୍ତୁ ତୁମେ ସମର୍ଥ ହେଲେ ମଧ୍ୟ ନିଜ ସମ୍ବନ୍ଧୀୟମାନଙ୍କୁ ଉପେକ୍ଷା କାହିଁକି କରି ଦେଲ? ତୁମ ପାଖରେ ଅନେକ ସେବକ ଥିଲେ ଏବଂ ଖୁବ୍ ବେଶୀ ସୈନ୍ୟ ମଧ୍ୟ ଥିଲେ । ତୁମେ ଦୁଇ ପକ୍ଷକୁ ଦବାଇ ଦେଇ ପାରିଥାନ୍ତ ଏବଂ ନିଜର କଥାକୌଶଳଦ୍ୱାରା ସେମାନଙ୍କୁ ବୁଝାଇ ଦେଇ ପାରିଥାନ୍ତ; ପରନ୍ତୁ ତୁମେ ଜାଣିଶୁଣି କୌରବମାନଙ୍କ ସଂହାରକୁ ଉପେକ୍ଷା କରିଦେଲ । ଏଥିପାଇଁ ଏବେ ତୁମକୁ ତାହାର ଫଳ ଭୋଗ କରିବାକୁ ହେବ । ମୁଁ ପତିସେବା କରି ଯେଉଁ ତପ ସଞ୍ଚୟ କରିଛି, ସେହି ବଳରେ ମୁଁ ତୁମକୁ ଶାପ ଦେଉଛି ଯେ ଯେଉଁ ପ୍ରକାର ପରସ୍ପର ଯୁଦ୍ଧ କରାଇ ଦେଇ କୌରବ ଓ ପାଣ୍ଡବମାନଙ୍କୁ ତୁମେ ଉପେକ୍ଷା କରିଦେଲ, ସେଇ ପ୍ରକାର ତୁମେ ନିଜର ବନ୍ଧୁବାନ୍ଧବମାନଙ୍କୁ

ମଧ୍ୟ ବଧ କରିବ ଏବଂ ସ୍ୱୟଂ ମଧ୍ୟ ଅନାଥ ପରି ମରିଯିବ। ଆଜି ଯେପରି ଏଇ ଭରତ ବଂଶର ସ୍ତ୍ରୀମାନେ ଆର୍ତ୍ତନାଦ କରୁଛନ୍ତି ସେଇ ପ୍ରକାରେ ତୁମ୍ଭ କୁଟୁମ୍ବର ସ୍ତ୍ରୀମାନେ ମଧ୍ୟ ନିଜର ବନ୍ଧୁବାନ୍ଧବମାନେ ମରିଯିବା ପରେ ମୁଣ୍ଡରେ ହାତ ଦେଇ କାନ୍ଦିବେ।'

ଗାନ୍ଧାରୀଙ୍କ କଠୋର ବଚନ ଶୁଣି ମହାମନା ଶ୍ରୀକୃଷ୍ଣ ଦରଦର ହସି କହିଲେ–'ମୁଁ ତ ଜାଣିଥିଲି ଯେ ଏଇ କଥା ଏଇପରି ହେବ। ଶାପ ଦେଇ ତୁମେ ହେବା ଘଟଣାକୁ ବତାଇଦେଲ। ଏଥିରେ ସନ୍ଦେହ ନାହିଁ ଯେ, ବୃଷ୍ଣିବଂଶର ନାଶ ଦୈବୀକୋପରୁ ହିଁ ହେବ। ଏହାର ବିନାଶ ମୋ ବ୍ୟତୀତ କେହି କରିପାରିବ ନାହିଁ। ମନୁଷ୍ୟ କ'ଣ, ଦେବତା ବା ଅସୁର ମଧ୍ୟ ଏହାର ସଂହାର କରିବାକୁ ସମର୍ଥ ନୁହନ୍ତି। ଏଥିପାଇଁ ଏହି ଯଦୁବଂଶୀ ନିଜ ନିଜ ମଧ୍ୟରେ କଳହ କରି ନଷ୍ଟ ହେବେ।'

ଯୁଧିଷ୍ଠିରଙ୍କ ରାଜ୍ୟାଭିଷେକ ପରେ ଦେବୀ ଗାନ୍ଧାରୀ କିଛି ଦିନ ପର୍ଯ୍ୟନ୍ତ ତାଙ୍କରି ପାଖରେ ରହି ଶେଷରେ ନିଜ ପତିଙ୍କ ସହିତ ବଣକୁ ଚାଲିଗଲେ ଏବଂ ସେଠାରେ ତପସ୍ୱୀଙ୍କ ପରି ଜୀବନ ବିତାଇ ତପସ୍ୱୀଙ୍କ ପରି ସେ ନିଜର ପତିଙ୍କ ସହିତ ଦାବାଗ୍ନିରେ ସ୍ୱଶରୀରକୁ ଜଳାଇ ଦେଲେ ଏବଂ ପତିଙ୍କ ସହିତ କୁବେରଲୋକକୁ ଚାଲିଗଲେ। ଏହି ପ୍ରକାର ପତିପରାୟଣା ଗାନ୍ଧାରୀ ଇହଲୋକରେ ପତିସେବା କରି ପରଲୋକରେ ମଧ୍ୟ ପତିଙ୍କ ସାନ୍ନିଧ୍ୟ ଏବଂ ସେବା ପ୍ରାପ୍ତ କଲେ–ଯାହାକି ପ୍ରତ୍ୟେକ ପତିବ୍ରତାଙ୍କର ଅଭୀଷ୍ଟ ଲକ୍ଷ୍ୟ ହୋଇଥାଏ। ପ୍ରତ୍ୟେକ ପତିବ୍ରତା ନାରୀ ଗାନ୍ଧାରୀଙ୍କ ଚରିତ୍ରକୁ ମନନ କରି ସେଥିରୁ ଏହି ଶିକ୍ଷା ଗ୍ରହଣ କରିବା ଉଚିତ।

